ପୁଣ୍ୟା ମନ୍ଦାକିନୀ

ଲେଖିକା ଉତ୍କଳିକା ଦାସ
ପ୍ରଥମ ପ୍ରକାଶ : ୧୯୯୪

ପ୍ରଚ୍ଛଦ :
ଚିତ୍ରାବଳୀ
ନିର୍ଦ୍ଦେଶନା : ଡକ୍ଟର ଦିନନାଥ ପାଠୀ
ଅଙ୍କନ : ମାନସ ରଞ୍ଜନ ଜେନା
ପ୍ରକାଶକ : ଓଡ଼ିଶା ଲେଖକ ସମବାୟ
ସମିତି ଲିମିଟେଡ୍
୨୯/୪, ଟାଇପ୍- IV ଆର୍
ଅଶୋକ
ନଗର,ଭୁବନେଶ୍ୱର-୯
ଡ଼ି.ଟି.ପି. ଲେସର ଆଡ୍
ବ୍ୟବସ୍ଥାପନା ଆହେଡ୍
ମୁଦ୍ରଣ ରିପ୍ରୋପ୍ରିଣ୍ଟ
ମୂଲ୍ୟ ପଇଁଚାଳିଶ ଟଙ୍କା ମାତ୍ର

PUNYA MANDAKINI

Author : Utkalika Das
First Edition : 1994

Cover,
Direction &
Illustrations : Dr. Dinanath Pathy
Artist : Manas Ranjan Jena
Publisher : Orissa Writer's
Cooperative Society Ltd.
29/4, Type IVR
Ashok Nagar,
Bhubaneswar -9
D.T.P. : Laser Ad
Processed by : AHEAD
Printer : Reproprint
Price : Rs (45/-)
Rupees Forty five only

ବାବୁ, ବୁଢ଼ୀ, ବାବୁଲି, ବଗ, ଇଗ ଓ ଧାରାଙ୍କ
ହାତରେ ଦେଲି

ବୋଉ

# ମୋ କଥା

ଆମେ ଆମ ବାପାଙ୍କୁ ଦଦା ବୋଲି ଡ଼ାକୁଥିଲୁ। ଦଦା କହୁଥିଲେ, 'ମା, ଯାହା ଯେତେ ଦେଖୁଛୁ, ଅନୁଭବ କରୁଛୁ ଲେଖିବୁ। ନାରୀମାନଙ୍କର ଲେଖା ବଡ଼ ବିରଳ।'' ୧୯୬୦ ରେ ଆମେ କାଶ୍ମୀର ଯାଇଥିଲୁ। ସେତେବେଳେ ମୋ ଦଦା ମୋ ବୋଉକୁ କହୁଥିଲେ, ''ମୁଁ ତ କାଶ୍ମୀର ଯାଇନାହିଁ, ମୋ ମା' କାଶ୍ମୀର ଗଲା।'' ମତେ ଏକ ତିରିଶ ବର୍ଷ ବେଳେ ଦଦା ସଂସାରରୁ ଗଲେ। ତା ପରଦିନ, ମକର ସଂକ୍ରାନ୍ତି ଦିନ ପୁଅଟିଏ ଜନ୍ମ ହେଲା। ଦଦାଙ୍କ ଗଲାରେ ମୁଁ ବଡ଼ ବ୍ୟସ୍ତ ହେଲି। ଶାଶୁ ମତେ ବୁଝାନ୍ତି। ଶାଶୁ ଶଶୁର ଆଉ ଅନ୍ୟମାନେ କହନ୍ତି, ''କାହିଁକି ଏତେ ବାପା ବାପା ହେଉଛ? ଏଇ ପୁଅଟି ତ ତମର ବାପା ଜନ୍ମ ହେଇଛି।'' ସେଇ ପୁଅ ଛ' ବର୍ଷର ହେଲା। ଦିନେ ଖାତାଟିଏ ଆଣି କହିଲା, ''ଏ ବୋଉ, ଲେଖେ ବୋଉ, ଏଇଠି ଲେଖେ।'' ମତେ ଲାଗିଲା ପୁଅ ମୁହଁରେ ମୋ ଦଦା କହୁଛନ୍ତି। ଲେଖିଲି।

ଲେଖା ଆରମ୍ଭରୁ ଏ ଭିତରେ ପଚିଶ ବର୍ଷ ବିତିଲାଣି। ଏହାର କେତୋଟି ଅଧ୍ୟାୟ, ଇଂରାଜୀ ପ୍ରଫେସର ପ୍ରଫୁଲ୍ଲ କୁମାର ମହାନ୍ତିଙ୍କ ସମ୍ପାଦିତ ''ବାଇଶି ପାହାଚ''ରେ ପ୍ରକାଶିତ ହୋଇଥିଲା, ପନ୍ଦର ଷୋହଳ ବର୍ଷ ତଳେ।

ଲବ୍ଧ ପ୍ରତିଷ୍ଠ ସାହିତ୍ୟ ସମାଲୋଚକ ପ୍ରଫେସର ଯତୀନ୍ଦ୍ର ମୋହନ ମହାନ୍ତି ଓ ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ଭାଷାତତ୍ତ୍ୱବିତ୍ ଡ଼କ୍ଟର ଦେବୀ ପ୍ରସନ୍ନ ପଟ୍ଟନାୟକ ଏ ଲେଖାପଢ଼ି ଏହା ଶୀଘ୍ର ପ୍ରକାଶ କରିବାକୁ କହିଲେ। ଯତିବାବୁ ବହିଟିର ନାମକରଣ କରିଛନ୍ତି। ସମତଳକୁ ଓହ୍ଲାଇବା ପୂର୍ବରୁ, ଅନ୍ୟ ବହୁ ଧାରା ସହିତ ମିଶି ଜଗତ୍‌ପାବନୀ ଗଙ୍ଗା, ହିମାଳୟକୁ କାଟି, କେଉଁ ଅଚଳରେ ପ୍ରବାହିତା ହେଉଛନ୍ତି ମନ୍ଦାକିନୀ ରୂପରେ। ଦେବତାଙ୍କ ବିଭୂତି ତାଙ୍କଠାରେ, ମାତ୍ର ସେ ପ୍ରାୟ ଅଦୃଶ୍ୟା ଠିକ୍ ଯେମିତି ଗୋଟିଏ ନାରୀର ସୀମିତ ପରିସରରେ ବିତୁଥିବା ଜୀବନ। ଏଇ ଜୀବନ ହିଁ ପୁଣ୍ୟ, ପବିତ୍ର, ମନ୍ଦାକିନୀ ପରି।

ପରମ ଶ୍ରଦ୍ଧେୟ ଦିନନାଥ ପାଠୀଙ୍କ ନିର୍ଦ୍ଦେଶନାରେ ସ୍ନେହଭାଜନ ମାନସ ରଞ୍ଜନ ଜେନା ଏ ବହିଟି ଛବିଳ କରିଛନ୍ତି। ଲେଜର ଆଡ଼୍‌ର ଶ୍ରୀ ଅନୀଲ କୁମାର ପଣ୍ଡା ଏହାର ଡ଼ି.ଟି.ପି କରିଛନ୍ତି। 'ଆହେଡ୍' ସଂସ୍ଥାର ଶ୍ରୀମାନ ଜ୍ୟୋତିର୍ମୟ, ଶ୍ରୀମାନ୍ ଅତିଥି ଓ ଶ୍ରୀମାନ୍ ମାନସରଞ୍ଜନ ଚିତ୍ରଗୁଡ଼ିକର ଯଥାଯଥ ସଂଯୋଜନା ସହିତ ଛାପା ହେବାର ଆନୁସଙ୍ଗିକ କାର୍ଯ୍ୟ ନିର୍ବାହ କରିଛନ୍ତି। ଆୟୁଷ୍ମତୀ ମିତା ପାଣ୍ଡୁଲିପି ପ୍ରସ୍ତୁତିରେ ସହାୟତା ଦେଇଛନ୍ତି। ଓଡ଼ିଶା ଲେଖକ ସମବାୟ ସମିତି ଏହାକୁ ପ୍ରକାଶ କରୁଛନ୍ତି। ଏମାନଙ୍କଠାରେ ମୁଁ ଋଣୀ।

ବହିଟି ପାଠକ ପାଠିକାମାନଙ୍କ ଆଦର ପାଇଲେ କୃତାର୍ଥ ହେବି।

ଉତ୍କଳିକା

ଲମ୍ୱା ବାରି। କୋଳି ଗଛଟିରେ କୋଳି ଫଳିଥାଏ। ଗୋରୁ ମାହାର ପିଲାଏ ପ୍ରତିଦିନ ଢ଼େଲା ଫୋପାଡ଼ି କୋଳି ଖାଇଯା'ନ୍ତି। କୋଳିଟିମାନ ମିଠା। ଭିତରେ ପୋକା ଥାଏ। ଲୋଭରେ ଖାଇଲା ବେଳେ ପୋକଡ଼ା ଦେଖି ଫୋପାଡ଼ି ଦିଅନ୍ତି। କୋଳି ଗଛରେ ମାଳତୀ ଗଛଟିଏ ଲଟେଇ ଥାଏ। ବଡ଼ ବଡ଼ ଫୁଲଟିମାନ। ବାସ୍ନା ମହକି ଉଠେ ପାଖକୁ ଗଲେ। ଡ଼ାହାଣ କରକୁ ବଡ଼ ଆମ୍ବ ଗଛଟାଏ। ବଡ଼ ବଡ଼ ଆମ୍ବ ହୁଏ। ଛୋଟ କଷି ବେଳୁ ସେମିତି ଗୋରୁ ମାହାର ପିଲାଏ ଝଡ଼ାଇ ଖାଇଯା'ନ୍ତି। ଆଉ ଯାହା ରହେ ବଡ଼ ହୁଏ। ଖୁବ୍ ଖଟା ଆମ୍ବ। ସେ ଆମ୍ବ କଞ୍ଚା ଖା'ନ୍ତି। ଆଉ ସେ ଆମ୍ବ କେବେ ପାଚେ଼ ଜାଣିବାକୁ ବାକି ରହେ ନାହିଁ। ବାରିର ଦୁଇ ପାଖେ ବହୁତ କଦଳୀ ଗଛ ଲାଗିଥାଏ। ସିଆର ହୋଇ ଥାଏ ମାଟି। ଶିମ ଲାଗିଥାଏ। ବିଲାତି ଆଳୁ, ବିଲାତି ବାଇଗଣ ମଧ। ବାରିଟାରେ ଆଉ ଜାଗା ନଥାଏ। ଶୀତ ଦିନେ ସେ ଗାଁଟିରେ ବହୁତ ପରିବା ପତ୍ର ହୁଏ। ତେଣୁ ଲୋକେ ସେମିତି ପରିବା କିଣନ୍ତି ନାହିଁ। ସେ ଗାଁରେ ପନ୍ଦରା ସାଇଟିଏ ଥାଏ। ପନ୍ଦରାମାନଙ୍କର ପନ୍ଦରା ବାରି ଥାଏ। ପନ୍ଦରା ଓ ପନ୍ଦାରୁଣୀଏ ବିକ୍ରୀ କରନ୍ତି—ପାଳଙ୍ଗ ଶାଗ, କୋଶଳା, ମୂଳା, ଲଙ୍କା ମରିଚ଼ ଏପରି ସବୁ କିଛି। ଯିଏ ବାରିରେ କରି ନଥାଏ ସେମାନେ କିଣନ୍ତି। ଅଳ୍ପ କିଛି ଧାନ ଦେଲେ ଏ ସବୁ ପାଆନ୍ତି। ସକାଳ ରାନ୍ଧଣା - ମୁଗ ଡ଼ାଲିରେ ପାଳଙ୍ଗ ଶାଗ, ବାଇଗଣ, ଦେଶୀ ଆଳୁ ବେଶ୍ ଦୁଇ ତାଟିଆ ହେବ ଶିମ ମଞ୍ଜି - ସଜ ଗଛରୁ ତୋଳି ଆଣି ଛଡ଼ା ହୋଇ ପଡ଼ି ସନ୍ତୁଳା ହୁଏ। ଏସବୁ ଥାଏ ମିନି ବାପାଙ୍କର ପ୍ରଧାନ ଖାଦ୍ୟ। ଜେଜେମା ଶୀତ ଦିନେ ପିଠିକୁ ଖରା



ଦେଖାଇ ବସି ଥାଆନ୍ତି ବା ଠିଆହୋଇ ଥାଆନ୍ତି। କୁଞ୍ଜଲତା ଫୁଲ ଅପରାଜିତା ଫୁଲ ଗୁଡ଼ିକ ଶୀତ ସକାଳରେ ଫୁଟିଥାଏ। ଖରା ପଡ଼ି ଆସୁଥାଏ। ଗଛମାନଙ୍କରୁ ହେମ କାକର ଖସି ପଡୁଥାଏ। ଜେଜେମାଙ୍କ ପାଖରେ ନାତୁଣୀ ତିନୋଟି ଯାଇ ଠିଆ ହୁଅନ୍ତି। ଖରା ପୁଅନ୍ତି। ଗାଢ଼ ନୀଳର ଅପରାଜିତା ଗୁଡ଼ିକ ବାଡ଼ ଦେହରେ ଗୁଞ୍ଜିହେଲା ଭଳି ଡାଳ ଉପର ସଜେଇ ହୋଇ ରହିଥାଏ। କୁଞ୍ଜଲତା ଗୁଡ଼ିକ ମଧ ଲାଲ୍ ହୋଇ ଥାଏ। ଜେଜେମା ସାନ ନାତୁଣୀଟିକୁ କୋଳକୁ ନିଅନ୍ତି। ମଝିଆଁଟି ମାଙ୍କ ଆଗରେ ବସିପଡ଼େ। ମିନି ଠିଆହୋଇ ରହେ। ମା'ଙ୍କୁ ମିନି ପଚାରେ, ମାଆ ଏ କି ଫୁଲ? ମାଆ କୁହନ୍ତି, ଏ ଅପରାଜିତା, ଏ କୁଞ୍ଜଲତା। କୃଷ୍ଣଙ୍କର ଅପରାଜିତାରେ ଭାରି ଶରଧା। ମାଆ ସବୁବେଳେ ସେ ଫୁଲ ତୋଳି ଆଣନ୍ତି ଆଉ ଠାକୁରଙ୍କୁ ଦିଅନ୍ତି। ମିନି ମଧ ସେ ଫୁଲ ତୋଳିଆଣେ ଆଉ ମାଆଙ୍କ ପାଖରେ ଦିଏ। ବାରି ପଛପଟେ ବିଲ। ଧାନ କଟାହେଲା ପରେ ସେଠି ସବୁ ପାଇଖାନା ଆରମ୍ଭ ହୋଇଯାଏ। ତା'ପରେ ବର୍ଷା ହେଲାପରେ ବିଲରେ ବହୁତ ପାଣି ନଈ ଭଳି ଚାଲେ। ସେଠି ସବୁ ଗାଧୁଆନ୍ତି। ପାଣି ମଧ ମାଠିଆରେ ଘରକୁ ନିଅନ୍ତି। ନଈଟା ମାଇଲକରୁ ବେଶି ଦୂର ହେବ। ବ୍ରାହ୍ମଣ, ଗଉଡ଼, ତେଲି,

ଗୁଡ଼ିଆ, ଚଷା ପାଣି ଆଣନ୍ତି ନଦୀରୁ। ଆଉ କରଣ ଘର ବୋହୂ ଝିଅତ ପଦାକୁ ବାହାରନ୍ତି ନାହିଁ, ତେଣୁ କେହି କେହି ବାରିର ସେହି ବିଲ ପାଣିରେ ଗାଧେଇ ସେଠୁଁ କିଛି ପାଣି ଆଣନ୍ତି। 'ବାରିରେ' ମଧ୍ୟ କୂଅଟାଏ ନଥିଲା, ତେଣୁ ଗଉଡୁଣୀ ପାଣି ଦେଲେ ଯାଇ ଅନ୍ୟମାନେ ଗାଧୁଆ ପାଧୁଆ ବା ରୋଷେଇବାସ କରୁଥିଲେ। ନଈରୁ ଓ ପୋଖରୀରୁ ଦି ଆଡୁ ଗଉଡୁଣୀ ପାଣି ଦିଏ। ତା ନାଁ ମାଳତୀ। ନଈରୁ ପୋଖରୀରୁ ପାଣି ଆଣିଲା ବେଳେ ପିତଳ ହାଣ୍ଡିଟିକୁ ମୁଣ୍ଡରେ ଚିମୁଳା ଉପରେ ଲଦି ଓ ମାଠିଆଟି କାଖରେ ଧରିଥାଏ। ବୋହୂ ଝିଅମାନେ ପାଣି ଆଣିବା ଦେଖିବାକୁ ଭଲ ଲାଗେ। କିନ୍ତୁ କରଣ ଘର ଝିଅ ବୋହୂମାନେ ଏସବୁ କରନ୍ତି ନାହିଁ। ସେମାନେ ସବୁ ଅନ୍ତରାଳରେ ରହି ଆସିଛନ୍ତି। ବନ୍ଧରୁ ପାଣି ଆଣନ୍ତି ଦାନୁଆ ବ୍ରାହ୍ମଣମାନେ। ଗାଁଟି ଦୁଇ ସାଇ। ବଡ଼ ସାଇର ଲୋକେ ନଦୀକୁ ଯାଆନ୍ତି। ତଳ ସାଇ ଲୋକମାନେ ବନ୍ଧକୁ ବେଶି ବ୍ୟବହାର କରନ୍ତି। ଥରେ ନଦୀକୁ ଗାଧୋଇ ଗଲେ ଦୁଇ ଭାଇ। ମିନି ସେତେବେଳେ ପାଞ୍ଚ ବର୍ଷର। ତାକୁ ଅତି ଶରଧାରେ ସାଙ୍ଗରେ ନେଲେ। ନଈରେ ଗାଧୋଇ ଫେରିଲା ବେଳକୁ ଖୁବ୍ ବଡ଼ ବଡ଼



ଥୋପା ପାଣି ପକାଇଲା । ଦୁଇ ଭାଇଯାକ ଚୁଆଁରୁ ପାଣି ବାଲ୍‌ଟିଏ ଲେଖା ଧରି ମିନିକୁ ଧରି ଧାଇଁ ଧାଇଁ ଆସିଲେ । ସେ ବର୍ଷା ମାଡ଼ ଖାଇ ମିନିର ଜୀବନ ଅଧାପ୍ରାଣ ହୋଇଗଲା । ଘରେ ପହଞ୍ଚି ହିକ୍କା ମାରୁଥାଏ । ଆଉ କଥା କହିପାରୁ ନଥାଏ । କାଲୁଆ ହୋଇ ଯାଇଥାଏ । ତା ବୋଉ ତାକୁ ବିଛଣା କରି ଶୁଆଇ ଦେଲା । ଭାଇମାନେ ଛାନିଆ ହୋଇଗଲେ । ମିନି ଶୋଇଲା । ଉଠିଲା ବେଳକୁ ସଞ୍ଜ ହୋଇ ଆସୁଛି । ମେଘୁଆ ପାଗ ହୋଇଛି । ତାର ହିକ୍କା ଆଉ ନାହିଁ । ଦେହ ବେଶ୍ ସୁସ୍ଥ ଲାଗୁଛି । ତା'ବୋଉ ତାକୁ କେବଳ ଅନାଇ ରହିଲା । ସେ ତା ଭାଇମାନଙ୍କୁ ଖୋଜିଲା । ତାକୁ ଆଉ ସେତେବେଳେ ପାଇଲା ନାହିଁ । ସେମାନେ ହୁଏତ ମିନିର ଏ ଅବସ୍ଥା ପାଇଁ ଭୟ ପାଇ ଲୁଚିଥିଲେ ।



ସେ ଗାଁକୁ ଅନେକ ସମୟରେ ବାଘ ଆସିଥାଏ । ଗୋରୁ, ଛେଳି ମାରି ଖାଇଯାଏ । ରାତିରେ ଆସନ୍ତି କଲରାପତରିଆ, ମହାବଳ, ହେଟା । କୋଉଦିନ କାହା ଗାଈ ମାରିଲା, କୋଉଦିନ କାହା ବାଛୁରି ମାଇଲା, ଗାଁଟିରେ ହା ହୋଳି ପଡ଼ିଯାଏ । ସକାଳୁ ସାଇ ପଡ଼ିଶାରୁ ବାଘ କଥା ଶୁଣି ମିନିକୁ ଭାରି ଡ଼ରମାଡ଼େ । ତା ହାତ ଗୋଡ଼ ଥରେ । ଭାତ ଖାଉଥିବା ବେଳେ ପାଟିରେ ଭାତ ଗୁଣ୍ଡାଟି ଅଟକିଯାଏ । ରାତିରେ ଶୋଇଲା ବେଳେ ସେ ଖୁବ୍ ଡ଼ରେ । ସେ ଭୂତ କଥା ଶୁଣିଲେ ମଧ ଡ଼ରେ । ଜେଜେମା ପାଖରେ ସଞ୍ଜ ବେଳେ ବସେ । ଗପ ଶୁଣେ । ମା'କୁହ, ମା'କୁହ ବୋଲି ଜେଜେମାଙ୍କର ଥୋଡ଼ି ଧରି ହଲାଉଥାଏ ।

ସ୍କୁଲ୍‌ରୁ ଫେରିବା ପରେ ଖେଳ ହେଲା ମିନିର ପ୍ରଧାନ କାମ । କୋଉଠୁଁ ବୋଇତ ତିଆରି ହେବ, କଣ୍ଢେଇ ବେଦୀ ପଡ଼ିବ, ନୂଆ ଶାଢ଼ି କଣ୍ଢେଇ

ପିନ୍ଧିବ, ବେଦୀର ଛାମୁଣ୍ଡିଆ ହେବ, ମିନି ସମସ୍ତଙ୍କର ହେଡ୍ ହୁଏ। ସେ ଯାହା କହିବ ବା କରିବ ତାହାହିଁ ହେବ। ତା ସାଙ୍ଗକୁ ସାନ ଭଉଣୀ ଦୁହେଁ, ଆଉ ପୁତୁରା, ଝିଆରୀ, ପୁଷ୍ପ, ଶରତ ଥାଆନ୍ତି। ଶୈଳ, ସୁଧାଂଶୁ, ଶାନ୍ତି ଜୁଟନ୍ତି। ଚୁଲି ତିଆରି କରିବାରେ ଲାଗିଯାନ୍ତି ତ, ଘୋରଣା, ପେଷଣା, ଶିଳ ମାଟିରେ ତିଆରି କରିବାରେ ଲାଗି ଯାଆନ୍ତି କେହି। କେହି ପାଣି କଖାରୁ କୋରେଇ ସାରି ତା'ର ଖୋଳପାଟାକୁ ଫୋପାଡ଼ି ଥାନ୍ତି। ତାକୁ ଆଣି ତା ଦେହରେ ଦଉଡ଼ି ବାନ୍ଧି ତା'ଭିତରେ କେବେ କେବେ କଣ୍ଢେଇ ବସାଇ ଘୋଷାରି ଘୋଷାରି ଆଣନ୍ତି। ନହେଲେ କାଠହଣା ଛାଲି, ତଳୁ ଗୋଟାଇ ଆଣନ୍ତି। ଘରୁ ଆମ୍ବ ଗଛ ମୂଳକୁ, ଆମ୍ବ ଗଛ ମୂଳୁ ଘରକୁ ଯିବା ଆସିବା କରୁଥାନ୍ତି। ଖେଳିବାକୁ ଜାଗା ବହୁତ, ତେଣୁ ଖୁସିରେ ଖେଳ ଚାଲିଥାଏ। ବୋଉ ଓ ମାମାମାନେ କେହି କିଛି କହନ୍ତି ନାହିଁ। ସେମାନେ ଦେଖି ଖୁସି ହୁଅନ୍ତି। କଥାବାର୍ତ୍ତା ହୁଅନ୍ତି—ମିନି ସମସ୍ତଙ୍କ ଠାରୁ ବଡ଼, ତା'ପଛକୁ ସମସ୍ତେ।

ବାଘ ମାରିବା ପାଇଁ ଦିନେ ରାତିରେ ଆମ୍ବ ଗଛ ଉପରେ ପଲା ତିଆରି ହେଲା। ରାଜା ହାତୀ ଉପରେ ବସି ଆସିଲେ। ପଲାରେ ବସିଲେ, ଗୁଳି କରିବେ ବାଘ ଆସିଲେ। ମାତ୍ର ସେଦିନ ରାତିରେ ଆଉ କୁଆଡ଼େ ବାଘ ଆସିଲା ନାହିଁ।

ଖରା ଦିନ। ମଶା ସେତେବେଳେ କ'ଣ ଲୋକଙ୍କୁ ଜଣା ନଥିଲା। ବାରଣ୍ଡାରେ ଶୁଅନ୍ତି। ମିନି ମଧ ବାରଣ୍ଡାରେ ବିଛଣା କରି ଶୁଏ। ନିଦ ନ ଆସିଲା ପର୍ଯ୍ୟନ୍ତ ଖୁବ୍ ଧୀରେ ଶବ୍ଦ ଶୁଣାଯାଏ ଭେଁଏ-ଏ। ମାତ୍ର ସେ କ'ଣ ଜଣା ନାହିଁ। କରଣ କାର୍ଯିଙ୍କ ହୁକୁମରେ ଗାଁର ଶେଷ ମୁଣ୍ଡରେ ଦଣ୍ଡାସି ଜଗାଳିମାନଙ୍କର କଡ଼ା ପହରା ଥାଏ। ତେଣୁ ରାତିରେ କହନ୍ତି, ଭଣ୍ଡାରି ଡ଼ାକିବ। ସେ ଭଣ୍ଡାରି ଡ଼ାକ ଶବ୍ଦଟାକୁ କାନେଇ ମିନିର ଦେହ ସାରା ବରଫ ହୋଇଯାଏ ଡ଼ରରେ।

ମିନି ରାତିରେ ବହୁତ ବାଉଳେଇ ହୁଏ। ଇ... ଇ... କରି ପାଟି କରି ଉଠେ। ଥରେ କାର୍ତ୍ତିକ ପୂର୍ଣ୍ଣମୀରେ ଘରୁ ଜେଜେମା, ପଡ଼ିଶା ଘରୁ ମାମା, ଅପା ପ୍ରଭୃତି ନଈକି ଗାଧୋଇ ଚାଲିଗଲେ, ବୋଇତ ଭସାଇ ଆସିବେ। ମିନିର ତା'ପରେ ନିଦ ଭାଙ୍ଗିଗଲା। ତାକୁ ନେଇ ନାହାନ୍ତି। ଉଠି କାନ୍ଦିଲା, ମୁଁ ଯିବି। ନିଦ ଭଲ କରି ଭାଙ୍ଗି ନାହିଁ, ସେ ଅନାଇଲା ବେଳକୁ ଦେଖୁଛି ଯେ ତା ଦେହସାରା, ବିଛଣା ଆଉ ଘର ସାରା ବଡ଼ ବଡ଼ ପର୍ବତିଆ ଗେଣ୍ଡାମଳା ଚାଲୁଛନ୍ତି, ଲହରୀ ଭଳି। ସେ ଆଉ କିଛି ନକହି ଇ... ଇ...

ହୋଇ ଫକ୍ ଫକ୍ ହୋଇ ଡ଼େଇଁବାକୁ ଲାଗିଲା। ତା ବୋଉ ତାକୁ ଦୁଇ ଚାପୁଡ଼ା ପକାଇଲା, କହିଲା, ମରିବୁ ନା କ'ଣ ଇମିତି ହଉଛୁ? ମିନିର ପୁଣି ଚେତା ପଶିଲା। ସକାଳ ହେଲା। ସେ ଦେଖିଲା ଡେଲୁଗୁଣି ପୋକ ଆଉ ନାହାଁନ୍ତି। ତା'ବୋଉ ତାକୁ ପଚାରିଲା—ଏମିତି କାହିଁକି ହେଲୁ? ମିନି କହିଲା, ଗେଣ୍ଡାମଳା ଚାଲୁଥିଲା। ଗେଣ୍ଡାମଳା ପୋକକୁ ମିନିର ବଡ଼ ଡ଼ର, ଆଉ କେଞ୍ଚୁଆକୁ ମଧ୍ୟ। ସିଏ ସେଦିନ ରାତିରେ ନଦୀରେ ଡ଼ଙ୍ଗା ଭସାଇ ନଯାଇ ଥିବାରୁ ତାର ମନ ବଡ଼ ଦୁଃଖ ହୋଇଥିଲା। ସେ କେବଳ ଜେଜେମାଙ୍କ ସାଙ୍ଗରେ ଲଗାଇଲା, ମତେ କାହିଁକି ରାତିରେ ଉଠାଇଲ ନାହିଁ, ତମେ ଡ଼ଙ୍ଗା ଭସାଇଲ। ଜେଜେମା ତାକୁ ଯେତେ ବୁଝାଇଲେ ତା'ର ମନ ବୁଝିଲା ନାହିଁ। ମିନିଘର ବାରିର ଆମ୍ବ ଗଛ ଛଡ଼ା ଆଉ ସେ ଗାଁରେ କାହାର ଆମ୍ବ ଗଛ ନଥାଏ। ମାଇଲିଏ ଦୂର ନଦୀ। ତା'ପାଖେ ତୋଟା, ସେଠାରେ ଯେତେ ଆମ୍ବ ଗଛ। ଗାଁ ସ୍କୁଲରେ ସରସ୍ୱତୀ ପୂଜା ବା ଗଣେଶ ପୂଜାରେ ଆମ୍ବ ତୋରଣ ବନ୍ଧା ହେବ, ସେଥି ଯୋଗୁଁ ମିନିର ସ୍କୁଲସାଙ୍ଗ ସବୁ ଆସି ତାଙ୍କ ବାରିରୁ ଆମ୍ବ ପତ୍ର ଆଙ୍କୁଡ଼ି ଲଗାଇ ତୋଳି ନିଅନ୍ତି। କିମ୍ବା ଗୁରୁବାର ମାର୍ଗଶୀର ମାସରେ, ଗେଣ୍ଡୁ ଫୁଲ ସହ ଆମ୍ବ ପତ୍ର ମିଶାଇ ଦୁଆର ବନ୍ଧରେ ଲଗାଇବା ପାଇଁ ମଧ୍ୟ ନିଅନ୍ତି। ମାର୍ଗଶୀର ମାସରେ ପ୍ରତି ଘରମାନ ଲିପା ପୋଛା ହୋଇ ଚିତା ପଡ଼ିଥାଏ। ସେ ସବୁ ମିନିକୁ ଭାରି ଭଲ ଲାଗେ। ସେ ଚିତା କିପରି ପକାଇବ ତାହା ଚିନ୍ତା କରେ।



— ୨ —

ମିନି ଗାଁର ବାଳିକା ସ୍କୁଲ୍‌ଟି ଚାଳ ଘର। ଗୋଟାଏ ବଡ଼ ବଖରା, ଦୁଇ ଭାଗ ହୋଇଥାଏ। ଏକ ଭାଗରେ ତୃତୀୟ ଚତୁର୍ଥ ଆଉ ଏକ ଭାଗରେ ଶିଶୁ ପ୍ରଥମ ଓ ଦ୍ୱିତୀୟ ଶ୍ରେଣୀ ଥାଏ। ବାହାର ଚାରିକରେ ପିଣ୍ଡା। ଦାଣ୍ଡପଟେ କବାଟ ଦ୍ୱାରବନ୍ଧ। ବାରି ପଟେ କବାଟ ଦ୍ୱାରବନ୍ଧ। ମାଟି କାନ୍ଥରେ ଚୂନ ଧଉଳା ହୋଇଥାଏ। ତଳେ ସବୁ ଶ୍ରେଣୀରେ ଲମ୍ବା ଲମ୍ବା ପଟା ପଡ଼ିଥାଏ, ପିଲାଏ ବସିବାକୁ। ମାଷ୍ଟ୍ରଙ୍କ ପାଇଁ ଏକରେ ଟେବୁଲ୍ ଚୌକି ଓ ସେକରେ ଟେବୁଲ ଚୌକି। ପିଲାଏ ବହିପତ୍ର ଦପ୍ତର ଆଣିଥାନ୍ତି, ସିଲଟର ମଙ୍ଗ କାଠରେ କଣାଟିଏ କରି ସେଥିରେ ସୂତା ବାନ୍ଧି ତା'ଦିହରେ ଖଡ଼ିଟି ବାନ୍ଧିଥାନ୍ତି ଅନେକ ଝିଅ, ହଜି ନଯିବା ପାଇଁ। ମିନି ତ ଜଣେ ଶିକ୍ଷିତ ପରିବାରର ଝିଅ, ତେଣୁ ତା'ର ଖଣ୍ଡେ ବେଗ୍‌ରେ ବହି ସିଲଟ ପୂରାଇ ନିଏ। ଖଡ଼ି, ସିଲଟ ମଙ୍ଗରେ ବାନ୍ଧେ ନାହିଁ। ଖଡ଼ି ତାର ବହୁତ ହଜେ। ସ୍କୁଲ୍‌ର କାନ୍ଥରେ ଧାଡ଼ି ଧାଡ଼ି ହୋଇ ଲେଖା ହୋଇଥାଏ—

କେହି ରହିନାହିଁ ରହିବେ ନାହିଁଟି ଭବରଙ୍ଗ ଭୂମି ତଳେ
ସର୍ବେ ନିଜ ନିଜ ଅଭିନୟ ସାରି ବାହୁଡ଼ିବେ କାଳ ବଳେ।

ହରି ରଖେ ମାରେ କିଏ ?
ହରି ମାରେ ରଖେ କିଏ ?

ବୈକୁଣ୍ଠ ସମାନ ଆହା ଅଟେ ସେହିଘର।
ପରସ୍ପର ସ୍ନେହ ଯହିଁ ଥାଏ ନିରନ୍ତର॥

ଆହୁରି ଏହିପରି ଅନେକ ଲେଖା। ମଧୁସୂଦନଙ୍କର ଶିଶୁ ଗୀତ ଚୂନଧଉଳା କାନ୍ଥରେ ଗାଢ଼ ନୀଳ ଅକ୍ଷରରେ ଲେଖା ହୋଇଥାଏ। ସ୍କୁଲ୍ ହତା ଭିତରେ ଖେଳ ହୁଏ ଅନେକ ପ୍ରକାରର। ସୁନ୍ଦର ଫୁଲ ଫୁଟିଥାଏ। ହିରା ମକମଲ୍ଲୀ, ହଳଦିଆ ମକମଲ୍ଲୀ ବା ଗେଣ୍ଡୁ ଫୁଲଗୁଡ଼ିକୁ ଅନାଇ ରହି ଠିଆହୁଏ ମିନି। ବାରିକରେ କିଛି ପିଆଜ, ରସୁଣ ଆଉ ଲଙ୍କା ଗଛଟାଏ ଲଗାଇଥାନ୍ତି। ହତା ଭିତର ବେଶ୍ ପରିଷ୍କାର ପରିଚ୍ଛନ୍ନ। ଶୀତଦିନେ ସ୍କୁଲ୍ ଘରଟା ଥଣ୍ଡା ଲାଗେ। ପିଲା ବାହାରକୁ ଚାଲି ଆସନ୍ତି। ଖରା ଟାଣ ହେଲେ ଖରା କାଟେ, ପୁଣି ଭିତରକୁ ଚାଲି ଯାଆନ୍ତି। ଦିନେ ଦିନେ ପିଲାମାନେ ମାଷ୍ଟ୍ରେ ନ ଆସୁଣୁ ସ୍କୁଲ୍ ଚାଲି ଯାଆନ୍ତି। ବୋହୂ ଶାଶୁ, ଧୂଳିରେ ରନ୍ଧା ବଢ଼ା ଖେଳରେ ମାତିଥାନ୍ତି। ମିନି ଯାଇ ପହଞ୍ଚେ, ତାକୁ ଏ ସବୁ କିମ୍ଭୁତ କିମାକାର ଲାଗେ। କେତେବେଳେ ମେଚେରେ ଗୋଳମାଳ ଏ ସବୁ ତାକୁ ଭଲ ଲାଗେ ନାହିଁ। ତେଣୁ ସେ

ଏତେ ଶୀଘ୍ର ଏ କାମରେ ମିଶି ଯାଏନାହିଁ। ଠିଆ ହୋଇ ଦେଖେ। ଅନ୍ୟ ପିଲାଏ ଲୁଗା ପିନ୍ଧିଥାନ୍ତି। ତେଣୁ ତାଙ୍କ ପକ୍ଷରେ ଏପରି ଖେଳ ସହଜ। ମିନି ଫ୍ରକ୍ ପ୍ୟାଣ୍ଟ ପିନ୍ଧିଥାଏ। ସାଙ୍ଗ ପିଲାଏ ଓ ଅନେକ ବଡ଼ ପିଲାଏ ତାକୁ ଥଟ୍ଟା କରି ଏ - ସାହେବାଣୀ ବୋଲି ଡ଼ାକନ୍ତି। ଥରେ ସ୍କୁଲ୍‌କୁ ସାହେବାଣୀ ଆସିବାର ଥାଏ। ଆମର ଓଡ଼ିଆ ସ୍ତ୍ରୀ ଲୋକ, ସ୍କୁଲ୍ ଇନ୍‌ସ୍‌ପେକ୍ଟର୍। ତାଙ୍କୁ ମାଷ୍ଟ୍ର ଓ ପିଲାମାନେ ସବୁ ସାହେବାଣୀ ବୋଲି କହନ୍ତି।

ମିନି ସ୍କୁଲ୍‌ରେ ସମସ୍ତେ ବିଭିନ୍ନ ପ୍ରକାରର ଲୁଗା ପିନ୍ଧିବା ଦେଖି ଆସି ଘରେ କାନ୍ଦ ଆରମ୍ଭ କରି ଦେଇଛି। ବୋଉ ସାଙ୍ଗରେ ଲଗେଇଛି ମୁଁ ଲୁଗା ପିନ୍ଧିବି। ଏତେ ସାନ ଝିଅ ପାଇଁ ବୋଉ କେଉଁଠୁ ଲୁଗା ଆଣିବେ ? ଛୋଟ ଲୁଗାତ ଘରେ ନାହିଁ। ଝିଅ ଲୁଗା ପିନ୍ଧେ ନାହିଁ ତେଣୁ ସେ ବ୍ୟସ୍ତ ହୋଇ, ନିଜର ଖଣ୍ଡେ ଧଳା ପତଳା, କାଗଜ ପରି ଧୋବ ଫରଫର ଲୁଗା ଦେଲେ। ତା'ର ଧଡ଼ିଟି ଇଞ୍ଚେ ଓସାରର। କଦଳୀ ପତ୍ର ରଙ୍ଗର ଧଡ଼ିଟି। ଖୁବ୍ ସୁନ୍ଦର ମାନୁଥିଲା ମିନିକୁ। ହେଲେ କ'ଣ ହେବ, ଶାଢ଼ିଟା ଖୁବ୍ ବଡ଼ ହୋଇଯାଇଥିଲା। ଏତେ ବଡ଼ ଯେ, ପେଟରେ ମୁଟୁଳା ଭଳି ଦିଶୁଥାଏ। କାନ୍ଦି କାନ୍ଦି ଆଖିର କଜ୍ଜଳ ଗୁଡ଼ାକ ଗାଲ ସାରା ବୋହି ଲୁହ



ସହ ଶୁଖୁ ଥାଏ। ତା ସାଙ୍ଗ ତ ତା'ଠାରୁ ବେଶ୍ ବଡ଼। ବୟସରେ ଓ ଲମ୍ୱାରେ ମଧ୍ୟ। ସେ ତାକୁ ଡ଼ାକି ଦେଲା, ଚାଲେ ସାହେବାଣୀ, ମାଷ୍ଟ୍ରେ କେତେବେଳୁ ଆସିଲେଣି, ଗାଳିଦେବେ୍‌ରେ। ମିନି • ସ୍କୁଲ୍‌କୁ ଗଲା। ଦେଖିଲା, ସତକୁ ସତ ଦୁଇଜଣ ମହିଳା ସାହେବାଣୀ ବସିଛନ୍ତି, ଦୁଇଟି ଚଉକିରେ। ମାଷ୍ଟ୍ରେ ଦୁଇଜଣ ଏପାଖ ସେପାଖରେ ଠିଆ ହୋଇଛନ୍ତି। ଧୀର ନମ୍ର ଭାଷାରେ କଥାବାର୍ତ୍ତା କରୁଛନ୍ତି। ମିନିକୁ ଦେଖି ଅଳ୍ପ ବୟସ୍କା ଜଣକ ପଚାରିଲେ, ଏ କାହାର ଝିଅ? ମାଷ୍ଟ୍ରେମାନେ ଯଥା ଉତ୍ତର ଦେଲେ। ମିନି ବାପା ଭଦ୍ର ଲୋକଙ୍କର ନାମ ଜଣାଇ ଦେଲେ। ସାହେବାଣୀ ଦୁହିଁଙ୍କର ବୟସ - ଜଣଙ୍କର ୩୦ ଆଉ ଜଣଙ୍କର ୩୦ରୁ ବେଶି ହେବ। କନିଷ୍ଠା ମହିଳା ଜଣକ ମିନିକୁ ପଚାରିଲେ, ବଡ଼ ମହିଳାଙ୍କ ମୁହଁକୁ ଲକ୍ଷ୍ୟ କରି ପେନ୍‌ସିଲ୍‌ଟି ଦେଖାଇ, କଅଁଳିଆ ମିଠା ସ୍ୱରରେ କହିଲେ—ତୋର ତ ଭଲ ପାଠୁଆଳୀ ମୁହଁ ପରି ଦେଖାଯାଉଛି, କହିଲୁ ଦେଖି ଆଙ୍କ ମୁହଁରେ କେଉଁଠି କଳା ଚିହ୍ନ ଅଛି? ମିନିକୁ କହିବାକୁ ଇଚ୍ଛା ହେଉଥାଏ ମାତ୍ର ସେ ଦୁହେଁଯାକ ମହିଳା ତା'ମୁହଁକୁ ଚାହିଁ ହସୁଥାନ୍ତି। ତେଣୁ ତାଙ୍କୁ ଲାଜରେ ଆଉ କିଛି କହୁ ନ ଥାଏ। ମାଷ୍ଟ୍ରେ ଦୁହେଁ ଦୋଷୀଙ୍କ ପରି ଧୀରେ ଧୀରେ ମିନିକୁ କହୁଥାନ୍ତି, କହିଦେ, କହିଦେ। କିନ୍ତୁ ମିନି କିଛି ହେଲେ କହିଲା ନାହିଁ। ତାକୁ ଭାରି ଲାଜ ଲାଗିଲା। ସେ ଭାରି ଲାଜକୁଳି ଥିଲା। ତେଣୁ ମିନିକୁ ଛାଡ଼ି ଦେଇ ତା'ର ସାଙ୍ଗକୁ ପଚାରିଲେ। ସେ କହିଲା ଆଖି ତଳେ କଳା ଅଛି। ମିନି ସେତିକି ନ କହି ପରେ ଭାବିଲା, କାହିଁକି ସେତକ କହିଲା ନାହିଁ!

ଏହିପରି ବର୍ଷରେ ଥରେ ସାହେବାଣୀ ଆସି ପରୀକ୍ଷା କରିଯାଏ। ସାହେବାଣୀ ଆସିବେ ବୋଲି ସ୍କୁଲ୍ ହତାବାରି ସଫାସୁତରା ହୁଏ। ମାଷ୍ଟ୍ରେମାନେ, ପିଲାମାନେ ଲାଗିପଡ଼ନ୍ତି। ମିନିକୁ ଯେତେବେଳେ ସାତ ବର୍ଷ ବୟସ, ତାର ଗୋଟିଏ ଭାଇ ଜନ୍ମ ହେଲା। ମିନି ତ ବଡ଼ ଝିଅ। ତାର ଦୁଇ ଭଉଣୀ ତା'ଠାରୁ ସାନ ଥିଲେ। ସେ ସମସ୍ତଙ୍କ ଘରକୁ ବୁଲିଯାଏ। ଯା ଘରେ ପୁଅ ଦେଖେ ତା'ବୋଉକୁ ଆସି କହେ— ଏ ବୋଉ ତୁ ପୁଅଟେ ଜନ୍ମ କର। ମିନି ମାଘମାସ ଶ୍ରୀପଞ୍ଚମୀ ଦିନ ବଡ଼ ସକାଳୁ ଉଠି ଗାଧୁଆ, ପାଧୁଆ ସାରିଛି। ମାଷ୍ଟ୍ରେ ସେଦିନ ଡ଼ାକି ଆସିଥିଲେ। ମିନି ସ୍କୁଲ୍‌କୁ ଗଲା। ସ୍କୁଲ୍‌ଠାରୁ ପିଲାମାନେ ସବୁ ଶ୍ରୀପଞ୍ଚମୀରେ ଦାଣ୍ଡବୁଲି ବାହାରିଲେ।

"ବନ୍ଦଇ ହରି ଦେବ ମୁରାରି ଲକ୍ଷ୍ମୀ ଦେବୀଙ୍କର କାନ୍ତ"।

ଏପରି ଗୀତ ଗୁଡ଼ିଏ ପ୍ରତ୍ୟେକ ପିଲାଙ୍କ ଦାଣ୍ଡ ଦୁଆରେ ପିଲାଏ ଗଆନ୍ତି। ମାଷ୍ଟ୍ରେଙ୍କୁ ପଇସା ମିଳେ। ଯେଉଁମାନେ ଶ୍ରୀଫଳ ଧରନ୍ତି ସେମାନେ

ମାଷ୍ଟ୍ରଙ୍କ ପିନ୍ଧା ଲୁଗା ଆଉ ଅଧିକ ପଇସା ଦିଅନ୍ତି। ସେ ଆଉ ମାଷ୍ଟ୍ରମାନେ ଓ ପିଲାମାନେ ମିନି ଘରଦାଣ୍ଡ ଦୁଆରେ ଗୀତ ବୋଲିବା ଆରମ୍ଭ କରିଛନ୍ତି, ମିନି ଯାଇ ତା'ବୋଉ ପାଖରେ ପହଞ୍ଚିଲା ବେଳକୁ, ତା'ବୋଉର ଗୋଟିଏ ପୁଅ ହୋଇଛି। ସେ ପୁଅକୁ ଧାଇ ଗାଧୋଇ ଦେଉଛି। ସେତେବେଳେ ସବୁ ଝିଅମାନେ ପୁଅକୁ ଦେଖିବାକୁ ଘରଆଡ଼କୁ ମୁହାଁଇଲେ। ତା'ପରେ ସେମାନେ ଫେରିଲେ, ମିନି ଘରେ ରହିଲା, ଆଉ ବୁଲି ଗଲାନାହିଁ। ପର ବର୍ଷ ଶ୍ରୀପଞ୍ଚମୀକୁ ସବୁ ପିଲାଏ ମାଷ୍ଟ୍ରେ ମିଶି ଛଅ ମାଇଲ୍ ଦୂର ରାଜାଙ୍କ ଘରକୁ ଗଲେ। ଦୁଇଟି ବଳଦ ଗାଡ଼ି ହେଲା। ସେଥିରେ ସବୁ ବସିଲେ। ଯିବାର ଅଧା ରାସ୍ତାରେ ଆଖୁ ପେଡ଼ା ହଉଥାଏ। ସେଠାରେ ଆଖୁରସ ପିଇବାକୁ ଦିଅନ୍ତି। ଆଖୁ ଖଣ୍ଡେ ଖଣ୍ଡେ ଖାଇବାକୁ ଦିଅନ୍ତି। ପିଲାମାନେ ଆଖୁ ଖାଇ ଖାଇ ଚାଲନ୍ତି। ଶ୍ରୀପଞ୍ଚମୀ ଦିନ, ଦିନ ଦୁଇଟା ବେଳକୁ ରାଜା ଘରକୁ ବାହାରି ଥିଲେ। ରାଜା ଘରେ ପହଞ୍ଚିଲା ବେଳକୁ ବେଳ ରତରତ ହେଉଥାଏ। କିଛି ଟଙ୍କା ପାଇ ଫେରିଲେ। ଫେରୁ ଫେରୁ ରାତି ଆଠଟା-ନଅଟା ହେଲା। ବାଘ ଭୟକୁ ଡ଼ର ନ ଥାଏ, କାରଣ ବେଶି ଲୋକ, ପିଲା ହୋହଲ୍ଲା କରି ଖୁସିରେ ଆସୁଥାନ୍ତି। ପାଞ୍ଚ ବର୍ଷ ବୟସରୁ ଦଶ ବର୍ଷ ବୟସ ପର୍ଯ୍ୟନ୍ତ ପାଞ୍ଚୋଟି ଶ୍ରୀପଞ୍ଚମୀରେ ମିନି ଯୋଗ ଦେଇଥିଲା। ବର୍ଷେ ଶ୍ରୀଫଳ ଧରିଥିଲା। "ଯାହାକୁ ଜୟେ ଶ୍ରୀଫଳ ପାଏ" ଏପରି ଗୀତ ମଧ ଗାଇଥିଲା। ତା'ପରେ ତା ପାଠପଢ଼ା ବନ୍ଦ ହେଲା।

—୩—

ମିନିକୁ ଯେତେବେଳେ ସାଢ଼େ ଚାରିବର୍ଷ ହୋଇଥିଲା, ସେ ଗାଁରେ ଗୋଟିଏ ଡ୍ରାମା ହେଲା। ଦାଣ୍ଡରେ ଗାଁର ଲୋକମାନେ ଭରପୂର ହୋଇ ବସିଲେ। ମିନିର ଦାଦା ସେ ଗାଁର କରଣ। ତାଙ୍କ ଦାଣ୍ଡ ସାମନାରେ ନାଟକ ହେଲା, ସରୁ ସରୁ ଖଡ଼ିକାରେ ମାଛ ଧରିବା ପାଇଁ ଯେପରି ଜାଲ ବା ବେନ୍ଦା କରନ୍ତି, ସେହି ଜାଲରୁ ବଡ଼ ହେଁସ ଆକାରରେ କରଣ ଦାଦାଙ୍କ ଦୁଆର ପିଣ୍ଡାରେ ଟଙ୍ଗା ହେଲା। ବଡ଼ ବଡ଼ ଉଚ୍ଚା ପିଣ୍ଡା। ଚାଳ ଉପର ଠାରୁ ପିଣ୍ଡା ପର୍ଯ୍ୟନ୍ତ ବେନ୍ଦା ଜାଲଟି ଲଗା ହେଲା। ସେହି ସରୁ ସରୁ ଜାଲି ଭିତରରେ ମିନିର ପରିବାର - ବୋଉମା, ନୂଆମା, ମାମା, ଖୁଡ଼ୀ, ଅପା, ନୂଆବୋହୂ ଦୁହେଁ ଓ ତା ବୋଉ ପ୍ରଭୃତି ଉଚ୍ଚା ପିଣ୍ଡା ଉପରେ ମଶିଣା ପକାଇ ବସିଗଲେ। ସେଇ ସରୁ ଜାଲି ଭିତରେ ଥାଇ ଡ୍ରାମା ଦେଖୁଥିଲେ। ମିନି ବାହାରକୁ ଆସି କେତେବେଳେ ଦେଖେ ପୁଣି ଭିତରକୁ ଚାଲିଯାଏ ବୋଉ ପାଖକୁ, ନୂଆମା ବୋଉମା ପାଖକୁ। ବୋଉମା ଜଣକୁ ପିଲାଦିନୁ ମିନି ବହୁତ ଭଲ ପାଏ। ବୋଉମା ଦୁଧ ପିଆଇ ଦେଲେ ସେ

ପିଏ। ଗୋଡ଼ରେ ଧରି ନଚେଇ ନଚେଇ ଗୀତ ଗାଇଲେ ସେ ଶୁଏ। ତେଣୁ ସେ କେବେହେଲେ ବୋଉମା'କୁ ଛାଡ଼େ ନାହିଁ। ନୂଆମା ତାକୁ କାଖେଇ ବୁଲାଇ ଭାତ ଖୁଆନ୍ତି। ନୂଆମା ଡ଼ାଲି ରାନ୍ଧିଲେ ତାକୁ ଭଲଲାଗେ।

ମିନିର ପରିବାରର ଲୋକେଂ ସବୁ ଅଲଗା ଅଲଗା ଥାଆନ୍ତି, ପାଖ ପାଖ ଘର ଭିତରେ ପଡ଼ୋଶୀ ଭଳି। ଅଗଣାଟାରେ ବାଡ଼ ବୁଜା ହୋଇନଥାଏ। ମିନି ଘରେ ତା'ର ବୋଉ, ବାପା, ତାର ଭଉଣୀମାନେ। ତା ପାଖ ପଡ଼ିଶା ଘରଟି ବୋଉମା'ର। ବୋଉମା'ର ସାନ ଭଉଣୀ ନୂଆମା। ବୋଉମା'ର ପୁଅ ବୋହୂ ଆଉ ଝିଅ ଥାଆନ୍ତି। ବୋଉମା'ର ପଡ଼ିଶା, ମାମା। ମାମାଙ୍କର ପୁଅଟିଏ, ଝିଅଟିଏ। ତାଙ୍କ ପାଖ ଘର ପଡ଼ିଶା ଆଉ ଜଣେ ମାମା। ତାଙ୍କର ପୁଅ ବୋହୂ ଥାଆନ୍ତି। ବୋଉମା, ନୂଆମା, ମାମା ଦୁହେଁ ଏସବୁ ମିନିର ବଡ଼ମା ହୁଅନ୍ତି। ଘର ଅଲଗା, ରୋଷେଇ ଅଲଗା ମାତ୍ର ଅଗଣାଟା ସବୁ ଏକା ଥାଏ। ମିନି ଘର ଅଗଣାରେ ଏକ ବଡ଼ ରଜନୀଗନ୍ଧା ଗଛ ଥାଏ। ସଞ୍ଜ ବେଳେ ଫୁଲ ଗୁଡ଼ିକ ଲେଞ୍ଜା ଲେଞ୍ଜା ହୋଇ ଫୁଟି ବାସି ମହକାଇ ଦଉଥାଏ। ମିନି ଘରେ କେବେ ଡ଼ିବିରି ଜଳେ ନାହିଁ। ତେଣୁ ସଞ୍ଜବେଳେ ଯେତେବେଳେ ମିନିକୁ ନିଦ ଆସୁଥାଏ, ଅଗଣାରେ ଗୋଟିଏ ପିଡାଖଟ ପଡ଼ିଥାଏ, ସେଥିରେ ବସି ଢୁଳେଇବାରେ ଲାଗିଥାଏ। ବୋଉ ତାର ରୋଷେଇ କରୁଥାଏ। ମିନି ଶୀଘ୍ର ଶୋଇ ପଡ଼ିଲେ ଆଉ ଖାଇବ ନାହିଁ। ମିନିର ଜେଜେମା ପାଖରେ ବସି କହନ୍ତି,– ମା'ଲୋ! ପିତଚନ୍ଦ୍ର



ଆସିବ। ଖାଇକରି ଶୋଇବୁ। ପଡ଼ିଶାଘର ବ୍ରାହ୍ମଣଘର ଜେଠେଇ କହନ୍ତି, ତାଙ୍କ ନାତିକି, ପିତଚ୍ଛନ୍ଦ୍ର କରିଦେବିଟି। ଜେଠେଇଘରେ ଯେଉଁ ଡ଼ିବିରିଟା ଜଳୁଥାଏ, ତା'ର ଶିଖା ବଡ଼ ଥିଲା, ହୁ, ହୁ ହୋଇ ଜଳୁଥିଲା। ମିନି ଭାବୁଥିଲା ସେଇଟା ହୁଏତ ପିତଚ୍ଛନ୍ଦ୍ର। ଜେଠେଇ ପିତଚ୍ଛନ୍ଦ୍ର ରଖିଛନ୍ତି। ଦେହରେ ଭୂତ ଧରାଇଲା ପରି ଧରାଇ ଦେବେ। ମନେ ମନେ ମିନି ଡ଼ିବିରିଟାକୁ ଦେଖି ପିତଚ୍ଛନ୍ଦ୍ର ବୋଲି ଭାବେ। ପ୍ରତି ଦିନ ସଞ୍ଜରେ ପୁଣି ପିତଚ୍ଛନ୍ଦ୍ର ଦେଖେ।

ନାଟକଟି ଆରମ୍ଭ ହେଲା। ମିନିକୁ ନାଟକଟି ଭାରି ଭଲ ଲାଗୁଥାଏ। ନାଟକଟି କଂସ ବଧ। କଂସ ଯେତେବେଳେ ଦେବକୀର ଛ' ପୁତ୍ର ମାଇଲା ନାଟକଟିକୁ ମିନି ଖୁବ୍ ମନଦେଇ ଦେଖୁଥାଏ। ଦେବକୀ କାନ୍ଦି କାନ୍ଦି କଂସ ପାଖକୁ ପୁତ୍ରକୁ ଧରି ଆସି ଦେଉଥାଏ। କଂସ ଗର୍ଜନ କରି ଶିଳରେ କଚାଡ଼ି ଦେଉଥାଏ। ମିନିକୁ ସେତେବେଳେ ତା'ର ନୂଆମା କହନ୍ତି— ମିନିଲୋ! ତୋ ପୁଅକୁ ମାରି ପକାଇଲା ଲୋ। ମିନିର ବାପା ମିନି ପାଇଁ ଯେଉଁ ରବରକଣ୍ଢେଇ ସବୁ ଆଣନ୍ତି, ସେ କଣ୍ଢେଇ ଗୁଡ଼ାକ ଚିପିଲେ କୁଁ କୁଁ ହୁଅନ୍ତି। ମିନିର ସେଇ କଣ୍ଢେଇ ପୁଅକୁ କଂସ କଚାଡ଼ି ଦେଲା ବୋଲି ନୂଆମା କୁହନ୍ତି। ମିନି ପୁଣି ନିରିଖି ଦେଖେ, ତାର ତଥାପି ବିଶ୍ୱାସ ହୁଏ ନାହିଁ। ତା'ପୁଅତ ଘର ଭିତରେ ଅଛି। କଂସ ଯୋଉ ପୁଅକୁ ମାରୁଛି ସେ ତ ଆହୁରି ବଡ଼ ଦିଶୁଛି। ମନକୁ ମନ ଭାବେ, ନୂଆମା ମିଛ କହୁଛନ୍ତି। ଯଶୋଦା ଯେତେବେଳେ କୃଷ୍ଣଙ୍କୁ କାଖେଇ ଗୀତ ଗାଆନ୍ତି—

ଆ ଜହ୍ନ ମାମୁଁ ସରଗ ଶଶୀ
ମୋ କାହ୍ନୁ ହାତେ ପଡ଼ତୁ ଖସିରେ— ସରଗ ଶଶୀ।

ସେ ଗୀତଟି ମିନି ମନଦେଇ ଶୁଣେ। ତାର ମନେ ହେଉଥାଏ କୃଷ୍ଣଙ୍କୁ ସେ ଧରି ଗେଲ କରି କାଖେଇ ସେଇ ଗୀତଟି ଗାଆନ୍ତା। କୃଷ୍ଣ କ୍ଷୀର



ହାଣ୍ଡି ଭାଙ୍ଗିଲେ। ଯଶୋଦା ଗୋଡ଼େଇ ଥାଆନ୍ତି ଛାଟ ଧରି। ଯାମଳା ଗଛରେ ବାନ୍ଧିଲେ, ଯାମଳା ଗଛ ଭାଙ୍ଗିଲା। ଦୁଇଟି ଯୁବକ ଚାଲିଗଲେ। ମିନି ଡ୍ରାମାରେ ଏତେ ଜଣଙ୍କୁ ଦେଖିଥିଲା। ଯଶୋଦା, ଶ୍ରୀକୃଷ୍ଣ, ଯାମଳା ଗଛରୁ ବାହାରିଥିବା ଦୁଇଜଣ ଯୁବକ, ଆଉ କଂସ ଦେବକୀ। ଆଉ କ'ଣ ଦେଖିଥିଲା ତା'ର ବେଶି ମନେ ନାହିଁ। ମୟୂର-ଚନ୍ଦ୍ରିକା ଥାଇ କୃଷ୍ଣଙ୍କର ରୂପହିଁ ମିନିର ଆଖିରେ ନାଚିଲା। ମିନିର ବାହାଘର ପରେ ତା'ର ବୋଉ ମାଉସୀଙ୍କୁ କହିଲା, ଡ୍ରାମାରେ ଯେଉଁ କୃଷ୍ଣ ରୂପ ଦେଖି ଖୁସି ହେଉଥିଲା, ସେମିତି ବରଟିଏ ମିଳିଲା।

ମିନିକୁ ତା'ର ଶାଶୂ କହୁଥିଲେ, ବାହାଘର କେତେଦିନ ଯାଏ ତାଙ୍କର କିଛି ସନ୍ତାନ ହୋଇ ନଥିଲା। ଶ୍ୱଶୁର ଶାଶୂଙ୍କୁ ଗୋଟେ କୃଷ୍ଣ ଫଟୋ ଦେଲେ ଆଉ କହିଲେ, ଏଇଟିକୁ ମନେ ମନେ ଭାବୁଥା। ଶାଶୂ ସେମିତି କଲେ। ଗାଧେଇ ଆସି ଫଟୋଟିକୁ ଦେଖୁଥିଲେ। ତା'ପରେ ତାଙ୍କର ପୁଅ ହେଲା। ଶାଶୂଙ୍କର ଶାଶୂ ବଡ଼ ବ୍ୟସ୍ତ ହେଉଥାନ୍ତି, ଆହା ସତେ କ'ଣ ମୋ ପୁଅର ପୁଅ ହେବ? ପୁଅଟିଏ ହେଲେ ତାକୁ ପୁରୀ ନେଇ ବାଇଶି ପାହାଚ୍‌ରେ ଗଡ଼ାଇ ଆଣିବି। ତା'ପରେ, ପରେ ମିନି ଶାଶୂଙ୍କର ପାଞ୍ଚ ପୁଅ ହେଲେ। ତିନି ଝିଅ ହେଲେ। ସେତେବେଳେ ବୁଢ଼ୀ କହିଲା, ଆଲୋ ଏଗୁଡ଼ାକ କିଏ ଲୋ? ମୋ ବୋହୂକୁ ସାରିଲେଣି। ମିନି ଗାଁରେ ପ୍ରତିବର୍ଷ ଚଇତ୍ର ମାସରେ ଦଣ୍ଡ ନାଟ ହୁଏ। ଫଗୁଣ ମାସରେ ନାଟ ଆରମ୍ଭ ହୁଏ। ଚଇତ୍ର ମାସ



ମେରୁ ସଂକ୍ରାନ୍ତି ଦିନ ସରେ। ଦଣ୍ଡ ନାଟରେ ମଧ ନାନା ପ୍ରକାର ଚରିତ କରନ୍ତି। ରାମ ବନବାସ। ଲବ କୁଶଙ୍କର ରାମ, ଲକ୍ଷ୍ମଣ, ଭରତ, ଶତ୍ରୁଘ୍ନଙ୍କ ସହ ଯୁଦ୍ଧ। ଯିଏ ମାନସିକ କରିଥାନ୍ତି ସେମାନେ ଦଣ୍ଡୁଆଙ୍କୁ ସେଦିନ ଖାଇବାକୁ ଦିଅନ୍ତି। ଦଣ୍ଡୁଆମାନେ ଖରାବେଳେ ଆଁସି ଦଣ୍ଡ ଭାଙ୍ଗନ୍ତି। ସେମାନେ କାଳିକା ମୂର୍ତ୍ତିଟି ପାଖରେ ରଖିଥାନ୍ତି। ରାତି ବେଳକୁ ନାଟକ ଆରମ୍ଭ ହୁଏ। ପ୍ରଥମେ କାଳିକାଙ୍କୁ ଦଣ୍ଡବତ ହୁଅନ୍ତି। ତା'ପରେ ବୀଣାକାର ଆସି ପ୍ରଥମେ ତା'ର ଗୀତ ଗାଇ ଦଶ ଦିଗପାଳଙ୍କୁ ପ୍ରଣାମ କରେ। କାଳୀଙ୍କୁ ପ୍ରଣାମ କରେ। ସଭାଜନଙ୍କୁ ପ୍ରଣାମ କରି ଗୀତ ଗାଏ। ସେ ଚାଲିଯାଏ, ଆଉ ମାନେ ଆସନ୍ତି। ନାଟ ସରୁ ସରୁ ସକାଳ ହୋଇଯାଏ। ନାଟକ ଭିତରେ ବୀଣାକାର-କାରୁଆଣୀ ଥାଆନ୍ତି, ଶବର, ଶବରୁଣୀ ଥାଆନ୍ତି। ଉଷା ହରଣ, ବାଣାସୁର ବଧ ଇତ୍ୟାଦି ଅଭିନୟ କରାଯାଏ।

ମିନି ତା ଗାଁର ନଈରେ ବେଶି କାରବାର କରି ନ ଥିଲା। ବେଳେ ବେଳେ ଯାଏ। ଥରେ କାର୍ତ୍ତିକ ମାସରେ ସେ ଗାଁରେ ହଇଜା ଲାଗିଲା। ଅନେକ ଭଲ ହୋଇ ଯାଆନ୍ତି। ଅନେକ ଲୋକ କହିଲେ, ସେ ଗାଁରେ ଇଷ୍ଟ ଦେବୀ ହୁଅନ୍ତି, ଦୁର୍ଗା ଦେବୀ, ସେହି ହଇଜାରୁ ଗାଁକୁ ମୁକ୍ତ କଲେ। ତା'ପୂର୍ବରୁ ମିନିର ବାପାଙ୍କୁ ସେ ଗାଁ ଛାଡ଼ି ଅନ୍ୟ ଏକ ଅଞ୍ଚଳର ରେଭିନ୍ୟୁ ଇନ୍‌ସ୍‌ପେକ୍ଟର ହୋଇ ଅନ୍ୟ ଏକ ଗାଁକୁ ଯିବାକୁ ପଡ଼ିଲା। କାର୍ତ୍ତିକ ମାସ ଦୀପାବଳୀ ଦିନ ମିନିର ସାନ ଭଉଣୀଟି ହଇଜାରେ ଆକ୍ରାନ୍ତ ହୋଇ ମରିଗଲା। ସେଦିନ ଦୀପାବଳୀରେ ଆଉ ତାଙ୍କ ଘରେ ବାଣ ଫୁଟିଲା ନାହିଁ। ମିନି ରାତିକୁ ତା'ବୋଉକୁ କହିଲା, ଆଜି ପରା ଦୀପାବଳୀ, ବାଣ ତ ଫୁଟିଲା ନାହିଁ? ତା'ବୋଉ କହିଲା, ହଁ ସରୋଜିନୀ ମୋର ଦୀପାବଳୀ କରିଦେଇ ଗଲା, ଆଉ କି ବାଣ ଫୁଟିବ? ଯେଉଁ ଦୀପାବଳୀରେ ସେ ଘର ସାରା ଆଲୁଅରେ ଫାଟି ପଡୁଥିଲା, ସେ ଦୀପାବଳୀ ଦିନ ଘରଟା ପୁରା ଅନ୍ଧକାର ଥିଲା। ସେହି ସାତ ଦିନରେ ମିନି ପରିବାରର ସମସ୍ତେ ବିଦେଶ ଯାତ୍ରା କଲେ।

— ୪ —

ମିନିଘର ଯେତେବେଳେ ବିଦେଶ ଯିବାକୁ ବାହାରିଲେ, ଗାଁ ଦାଣ୍ଡରେ ସାତଟି ଶଗଡ଼ ଯୋଚା ହେଲା। ବାବାଜୀ ଜଣେ ବିଦେଶରୁ ଆସିଥାନ୍ତି। ମୁଣ୍ଡରେ ବଡ଼ ବଡ଼ ଜଟ ଗୁଡ଼େଇ ହୋଇଥାଏ। ଦାଢ଼ି ଲମ୍ବିଥାଏ। ମିନି ଘରର ଲୋକମାନଙ୍କୁ ନେବା ପାଇଁ ସେ ଆସିଥାନ୍ତି। ସାଇବୁ ନାମରେ ବୁଢ଼ା ପଠାଣ ପିଅନଟାଏ, କଳା ଯେ କଳା ହାଣ୍ଡି କଳା, ଡେଙ୍ଗା,

ଧଳା ଜାମା ପେଣ୍ଟ ପିନ୍ଧିଥିଲା । ଖୁବ୍ ପ୍ରଭୁଭକ୍ତି ତାର । ଯାହା ଆଦେଶ, ଶିରୋଧାର୍ଯ୍ୟ କରିଥାଏ । ଖୁଡ଼ୀ ଆଗରୁ ରାତିରୁ ଆସି ମିନିବୋଉକୁ ଦେଖି ଯାଇଥିଲେ । ଏ ସାଇରୁ ସେ ସାଇକୁ ଦିନ୍ଦ ବେଳେ ଯିବା ଆସିବା ନଥାଏ ।

ସକାଳୁ ବାହାରିଲେ, ମଙ୍ଗଳ ରାତି ବୁଧ ପାହାନ୍ତି । ମିନି ତା'ର ଭଉଣୀ ବିନି ଓ ଜେଜେ ମାଆ ପ୍ରଥମ ଶଗଡ଼ଟିରେ ବସିଲେ । ବୋଉ, ବାପା ଦୁଇ ଭାଇ ଆଉ ଗୋଟେ ଶଗଡ଼ରେ । ତା'ପର ଖୋଲା ଶଗଡ଼ଗୁଡ଼ିକରେ ଘରର ଜିନିଷପତ୍ର । ମିନିର ଖୁଡ଼ୀର ଝିଅ ମଦନା କହିଲା, ଯାଲୋ, ମିନି! ସେ ସକାଳୁ ଆସିଥିଲା । ଘରୁ ବାହାରିଲା ବେଳେ ମିନିର ମନଟା ତଥାପି ଦୁଃଖ ଲାଗୁଥିଲା । ଏତେ ଲୋକ ଭେଳେଇ ହୋଇଥିଲେ, କେହି କିଛି କହୁନାହାନ୍ତି । ଭାଇନା ତ ଛାଡ଼ିବାକୁ ଯାଉଛନ୍ତି । ହେଲେ ମଦନାଅପାର ସେହି କଥା ପଦକ ମନେ ପଡୁଥାଏ ମିନିର । ମଦନାଅପା କାନ୍ଦ କାନ୍ଦ ହୋଇ ଯାଇଥିଲା । ମିନି କିଛି ଆଉ ଉତ୍ତର ଦେଇ ପାରିଲା ନାହିଁ । କେତେ ଦିନ ପରେ ମିନି ଶୁଣିଲା ମଦନାଅପାର ବାହାଘର ହେଲା । ଚାରି ବର୍ଷ ପରେ ବଡ଼ ବାପାଙ୍କ ସାନ ପୁଅ ବାହାଘରରେ ମଦନାଅପା ସହିତ ଦେଖା ହେଲା । ମଦନାଅପା ସବୁ କହିଲା, ମିନିଲୋ, ତୁ ଗଲା ପରେ ମୁଁ ଠିଆ ହୋଇ ବହୁତ କାନ୍ଦିଲି । ଏ ସାଇରୁ ସେ ସାଇକୁ ଯିବାକୁ ମନ ହେଲା ନାହିଁ । କେବେ ମାସେ ପନ୍ଦର ଦିନରେ ଥରେ ଗଲେ ନୂଆ ବୋଉ କହନ୍ତି, ହଁ ମଦନା ଆଉ କାହିଁକି ଆସିବେ, ମିନି ଥିଲେ ଯେ ମଦନା ଆସୁଥିଲେ ।



ଗାଁ ଦାଣ୍ଡ, ସାଇରୁ ନଈ ପର୍ଯ୍ୟନ୍ତ ଶଗଡ଼ ଚାଲିଥାଏ। ମିନି ଦୁଇ ସାଇକୁ ନିରେଖି ଦେଖୁଥାଏ। ନଈ ହେଲା। ତୋଟା, ବଡ଼ ବଡ଼ ଆମ୍ବ ଗଛ, ସବୁ ରହିଗଲେ। ଶଗଡ଼ ଗାଡ଼ି ସବୁ ଚାଲିଲା, ଦିନ ହେଲା। ଖରା ପଡ଼ିଲା। ବାଟରେ ଚା' ତିଆରି କଲା· ମୃଷା ଭାଇନା, ବ୍ରାହ୍ମଣ ହଳିଆ ଜଣକ। ଶିଆଳି କାହାଳି ପତ୍ର ଠୋଲା କରି ସେଥିରେ ଚା' ଆଣି ଭାଇନା ଦେଲେ। ମିନିକୁ ଭାରି ଭଲ ଲାଗିଲା। ପୁଣି ବଳଦ ଗାଡ଼ି ଚାଲିଲା।

ଦୁଧ ଢ଼ଳିଯିବ ବୋଲି ଦୁଧ କେନ୍ଦା ଶଗଡ଼ରେ ନ ରଖି ସାଇବୁ ହାତରେ ଓହଳାଇ ଧରିଥାଏ। ପିଲାଏ ବାଟରେ ଦୁଧ ପିଉଥାନ୍ତି। ଯୋଉଠି ଦୁଧ ସରିଗଲା, ପାଖ ଆଖ ଗାଁରୁ ଦୁଧ ଆଣେ ସାଇବୁ। ବାଟୁଆ, ହାଟୁଆ ଦୁଧ ବାଲା ଦୁଧ ନେଇ କିଏ କୁଆଡ଼େ ଗଲାବେଳେ ସେଠୁ ସାଇବୁ ଦୁଧ ସଂଗ୍ରହ କରେ। ଜଙ୍ଗଲ, ପାହାଡ଼, ପର୍ବତ ଦେଇ ଶଗଡ଼ଗୁଡ଼ିକ ତା'ପଛକୁ ତା'ପଛ ଚାଲିଥାଏ। ମିନି, ତା'ଜେଜେ ମାଆ, ଭଉଣୀ ବେଶ୍ ମଜାରେ ବସିଥାନ୍ତି। ତାଙ୍କ ଶଗଡ଼ ଆଗରେ ଚାଲିଥାଏ। ବଣର ସୁନ୍ଦର ସୁନ୍ଦର ଫୁଲପତ୍ର ସୂର୍ଯ୍ୟ କିରଣରେ ଆହୁରି ସୁନ୍ଦର ଦିଶୁଥାଏ। ଶଗଡ଼ ଚାଲିଥାଏ। ଦୁଇ କଡ଼େ ଟହ ପତ୍ର, କଇଁଠ ଗଛ, ବେଲ ଗଛ, ହରିଡ଼ା, ଅଁଳା, ଅନେକ ପ୍ରକାରର ବଡ଼ ବଡ଼ କଣ୍ଟା ଗଛ ସବୁ ଚାଲିଥାନ୍ତି। ମିନିକୁ ଲାଗେ ଗଛଲତା, ପାହାଡ଼ ସବୁ ଚାଲିଛନ୍ତି। ଯେଉଁଠି ରୋଷେଇ କରିବା ବେଳ ହୁଏ ରୋଷେଇ ଚାଲେ। କେବଳ ଭାତ ଡ଼ାଲ୍ମା ଖାଇବାକୁ ଭଲ ଲାଗେ ମିନିକୁ। ଦୁଧ ବଢ଼ାଟାଏ ଘରୁ ଆଣିଥନ୍ତି ଭାଇନା। ସେଥିରେ ସକାଳୁ ବଢ଼ା ଭାତ ବସାନ୍ତି। ଡ଼ାଲିକୁ କନାରେ ବାନ୍ଧି ଭାତ ଦେହରେ ପକାଇ ଦିଅନ୍ତି। ସେ ଭାତ ଡ଼ାଲି ହେଉ ହେଉ ଏଆଡ଼େ ହଣ୍ଡାରେ ସମସ୍ତଙ୍କର ରୋଷେଇ ହୁଏ। ଖିଆପିଆ ସାରି କିଛି ସମୟ ବିଶ୍ରାମ ନେଇ ପୁଣି ଶଗଡ଼ରେ ବଳଦ ଯୋଚା ହୁଏ। ହ, ହ କହି ଶଗଡ଼ିଆ ଦୁଇ ବଳଦଙ୍କୁ ଏପାଖରେ ହାତ ସେପାଖରେ ହାତ ମାରିଦିଏ। କେତେବେଳେ ଗଛରୁ ଛାଟ ଭାଙ୍ଗି ମାରେ। ହଳିଆ ଗୀତ ଗାଏ। ମିନିକୁ ଭାରି ମଜା ଲାଗେ। ପୁଣି ଗାଡ଼ି ଚାଲେ। ଚାଲିଲା ବେଳେ କଣ୍ଟା ବୁଦା ଗଛ ପତ୍ର ଗହଳ ଜଙ୍ଗଲ ଭିତରେ କେଉଁଠି ଛାଇତ, କେଉଁଠି ଖରା, କେଉଁଠି ଗହଳିଆ ତ, କେଉଁଠି ଅଳପ ଟାଙ୍ଗରିଆ। କେତେ ଗଛ ଶଗଡ଼ ଉପରେ ଘୋଷାରି ହୋଇଯାଏ, ଆଉ କଣ୍ଟା ଗଛମାନ ମଧ ଶଗଡ଼ ଉପରେ କର୍ର କର୍ର ହୋଇ ରାମ୍ପି ହୋଇଯାଏ। କେତେ ଗଛର ଛୋଟ ଛୋଟ ଡ଼ାଳ ଶଗଡ଼ ଭିତରକୁ ପଶି ଆସେ। ଗହଳିଆ ରାସ୍ତାରେ ଶଗଡ଼ ଚାଲେ। ମିନି ଭାବେ ରାସ୍ତା ଅଛି ନା, ଏମିତି ଗଛ ବଣ ଭିତରେ ଶଗଡ଼ ଚାଲୁଛି। ପଥିକମାନେ ଯିବା ଆସିବା କରୁଥିଲେ ଚାହିଁଦେଇ ଚାଲି ଯାଆନ୍ତି। କାହାର

କିଛି ପଚାରିବାର ଥାଏତ, କୁଆଡ଼େ ଯାଉଛ ଏତିକି ପ୍ରଶ୍ନ, ଅବା, କୁଆଡୁ ଆସିଲ ?

ରାତିରେ ଦିନରେ ଦୁଇ ଓଳି ରୋଷେଇ କରି ଖିଆ ପିଆ ବିଶ୍ରାମ ପରେ ରାତି ଦିନ ଶଗଡ଼ ଚାଲିଥାଏ । ଏମିତି ଚାରି ଦିନରେ ଯାଇ ସେ ଗାଁରେ ପହଞ୍ଚିଲେ । ସେ ଗାଁରେ ପହଞ୍ଚିଲା ବେଳକୁ ଦିନ ନଅଟା ସମୟ ହେବ । ଯେତେ ଦିନ ଶଗଡ଼ରେ ବସିଥିଲେ ମିନିର ମନ ହେଉଥାଏ ଆହୁରି କେତେଦିନ ଏପରି ଗାଡ଼ି ଚାଲିଥିବ, ସେ ଆଉ ତା'ର ପରିବାର ସେପରି ଗାଡ଼ିରେ ବସିଥିବେ !

ସେଠାରେ ପହଞ୍ଚି ଘର ଦୁଆର ବୁଲି ଦେଖିଲା ମିନି । ବହୁତ ଘର, ଛୋଟ ବଡ଼ ମିଶା ମିଶି । ବାରିରେ ଗୋଟେ କଇଠ ଗଛ ଥାଏ । ଆଉ ପାଇଖାନା ନ ଥାଏ । ଖାଲି ଦାଣ୍ଡରୁ ବାରି ପର୍ଯ୍ୟନ୍ତ ଘର । ଘର ଶେଷକୁ କୂଅଟାଏ । ସେ କୂଅରୁ ବ୍ରାହ୍ମଣ ସାଇର ସ୍ତ୍ରୀ ଲୋକମାନେ ପାଣି ନିଅନ୍ତି । ଦଉଡ଼ି ଲଗାଇ, ଗରା, ବାଲ୍‌ଟି ଲଗାଇ ପାଣି ଟାଣି ଆଣନ୍ତି । କାଠ ନନ୍ଦ କୂଅଟା ବାରିକୁ ଯିବା ବାଟରେ, ଡ଼ର ମାଡ଼େ । କୁଆଡ଼େ ଗୋଡ଼ ଖସିଗଲେ କୂଅରେ ପଡ଼ିଯିବ । କୂଅରେ କାରବାର ମିନିର ଅଭ୍ୟାସ ନଥିଲା । ଗଉଡୁଣୀଟିଏ କୂଅରୁ ପାଣି ଟାଣି ଦେଇ ଯାଏ । ନଈରୁ ମଧ ପାଣି ଆଣିଦିଏ । ବେଳେ ବେଳେ ବକର ବକର ହୋଇ ପାଟି କରେ । ମାସରେ ଦେଢ଼ଟଙ୍କା ନିଏ । ତେଣୁ ସେ ଭାବେ ବହୁତ କମ୍ ପଇସା, ମାସଟାଯାକ ପାଣି ଦେବି ଯେ, ଦେଢ଼ ଟଙ୍କା ମିଳିବ ! ମିନିର ଜେଜେମା, ବୋଉ କିଛି କହନ୍ତି ନାହିଁ । ସେ ଗାଁର ନଈଟା ମିନିର ବସାଠାରୁ ଅଳ୍ପ ଦୂରରେ । ସାଇର ବ୍ରାହ୍ମଣଘର ସବୁ ନିଜେ ନଦୀକୁ ଦୁଇଓଳି ଯାଆନ୍ତି । ସେଠି ଗାଧୁଆ ପାଧୁଆ କରନ୍ତି । ନିଜ ନିଜର ପାଣି ଆଣନ୍ତି, ଯେତେବେଳେ ଦରକାର ପଡ଼ିଲେ ଚଉଧୁରୀ କୂଅରୁ ପାଣି ଆଣନ୍ତି । ମିନିଘର ଯୋଉ ଘରେ ଥିଲେ ସେଇଟା ଚଉଧୁରୀଘର ।

ଏତେ ସ୍ତ୍ରୀ ଲୋକଙ୍କୁ ଦେଖି ନୂଆ ନୂଆ ଲାଗୁଥାଏ ମିନିକୁ । ପଡ଼ିଶା ଘର ରଘୁର ବୋଉ ଭାରି ଭଲ । ମିନିବୋଉ ସାଙ୍ଗେ, ତା'ଜେଜେମା ସାଙ୍ଗେ ଭଲ ମେଳ ହୋଇଥାନ୍ତି । ଆଉ ଜଣେ ବାସନ୍ତୀ ବୋଲି ଝିଅଟିଏ । ମିନିକୁ ତା'ର ହେମ ଅପା ପରି ଲାଗେ । ଶ୍ୟାମଳ ବର୍ଣ୍ଣ, ଗଠନ ଖୁବ୍ ସୁନ୍ଦର । ମୋଟା ମୋଟି । ସେ ମିନିକୁ ପ୍ରଥମେ ଦେଖି କେତେ କଥା ପଚାରିଲା । ମିନି ମଧ କିଛି କହିଲା । ଘରେ ବୋଉ ଅଛନ୍ତି କି ? କେତେ ତମେ ଭାଇ ଭଉଣୀ ? ଅନେକ କିଛି । ପିଲା ଦିନୁ ବାହା ହୋଇଥିଲା । ଶାଶୁ ଘରକୁ ଗଲା । ତାର ପୁଅଟିଏ ହେଲା । ତା'ଖୁଡ଼ୀ ଶାଶୁ ତା ସ୍ୱାମୀକୁ

ତା ନାଁରେ ମିଛ ସତ କହି ତାକୁ ବଦ୍‌ନାମ କଲା। ତା' ସ୍ୱାମୀ ତାକୁ ଘରୁ, ତା ବାପ ଘରକୁ ଛାଡ଼ିଦେଲା। ସେହି ଏକା ଗାଁରେ ତା'ର ଶାଶୂ ଶ୍ୱଶୁର ଘର। ଶାଶୂ ନ ଥିଲା। ତାହାର ଅନ୍ୟ ସାଙ୍ଗମାନେ ତାକୁ ପଚାରିଲେ, ସେ କହେ ମୋ ବର ମୋତେ ବହୁତ ଭଲ ପାଉଥିଲେ। ଏବେତ ଏମିତି କଲେ। ସେ ଆଉ ନଦୀକୁ ଗାଧୋଇ ଯାଏ ନାହିଁ। ତାହାର ବଡ଼ମା, ବୋଉ ମନା କରିଥାନ୍ତି। ଘର କୂଅରୁ ପାଣି ନେଇ ଗାଧୁଆଏ। ସେ ତାର ବାପା ମାଆଙ୍କର ଗୋଟିଏ ଝିଅ। ଆଉ ବାର ବର୍ଷର ତାର ଭାଇଟିଏ ଥାଏ। ଭଲ ଚଳଣି ଘର। ଘର ଦ୍ୱାର ମଧ ଭଲ। ବଡ଼ମା'ଟି ତାର ବିଧବା। ତେଣୁ ପୁଅ ଝିଅଙ୍କୁ ବଡ଼ମା ବୋଉ ନନା ବଡ଼ ଗେଲ ଅସରରେ ବଢ଼ାଇ ଥାନ୍ତି। ତା ବରକୁ ସେ ଦିନେ ଦିନେ ଦେଖିବାକୁ ଇଚ୍ଛା କରେ। ସେଥିପାଇଁ ନଈକୁ ଗାଧୋଇ ଯିବାକୁ ମନ କରେ। ତା ବର ନଈରୁ ଗାଧୋଇ ସାରି ଫେରିଲା ବେଳକୁ ଦିନେ ଦିନେ ବାସନ୍ତୀ ଯାଏ ମିନିଘରକୁ। ତା'ବୋଉ ବଡ଼ମା ମଧ ମିନି ଘରକୁ ଆସନ୍ତି। ନୂଆ ଲୋକ ଆସିଛନ୍ତି ଶଙ୍କୁଳିବାକୁ। ତା'ବଡ଼ମା ଓ ବୋଉ ମିନି ଘରକୁ ଯାଇ କହନ୍ତି, ବାସନ୍ତୀ ତମ ଘରକୁ ଆସିଲେ ତାକୁ ବେଶି ସମୟ ରଖିବ ନାହିଁ। ଆମ ଘରକୁ ପଠାଇ ଦେବ। ତେଣୁ ମିନି ଭାବେ କାହିଁକି ତା ବଡ଼ମା ବୋଉ ଏପରି କହୁଛନ୍ତି ? ମିନିକୁ ବାସନ୍ତୀ ବହୁତ ଭଲ ଲାଗେ। ତେଣୁ ସେ ଏପରି ଭାବେ। ସେ ସାଇରେ ବାସନ୍ତୀ ନାମରେ ମିଛରେ ବଦ୍‌ନାମ ଦେଇଥାନ୍ତି। ଆଉ ଅନ୍ୟମାନେ ତା'ବରକୁ ଶିଖାଇ ତା'ଠାରୁ ତାକୁ ଛଡ଼ାଇ ରଖିଥାନ୍ତି। ତା'ବୋଉ, ନନା, ବଡ଼ମା ବ୍ୟସ୍ତରେ ଦିନ କାଟୁଥାନ୍ତି। ଝିଅକୁ ଆଉ କେଉଁଠି ବାହା ଦେବାର କ୍ଷମତା ନାହିଁ। ଆଉ କୋଉଠି ବାହା ଦେବାର ହେଲେ ତା'ବରପକ୍ଷ ଲୋକେ ତା'ସାଇଲୋକମାନେ ମଧ ତାହା କରାଇ ଦେବେ ନାହିଁ। ବାସନ୍ତୀ କିନ୍ତୁ ଅନ୍ୟ ଝିଅମାନଙ୍କ ସହ ହସ ଖୁସିରେ ଦିନ କାଟୁଥାଏ।

ମିନି ତା ଗାଁରେ ଥିବା ବେଳେ ଥରେ ଦାଣ୍ଡ ଦୁଆରେ ଠିଆ ହୋଇଥିଲା। ପଡ଼ିଶା ବୋଉମାଘର ବଳଦଟାଏ ଭାରି ମାରଣା ହୋଇଥାଏ। ଯାହାକୁ ଦେଖିଲେ ମାରେ। ତାକୁ ବାନ୍ଧିଦେଲେ ଗୁହାଳରେ ରହେ। କେବଳ ବୋଉମା ଆଉ ଭାଇନାଙ୍କ ଛଡ଼ା ସେ ଆଉ କାହାରିକୁ ମାନେନାହିଁ। ସେ ବଳଦଟା ଫିଟିଥାଏ। ମିନିତ ଦାଣ୍ଡ ଦୁଆରେ ଥିଲା, ବଳଦଟା ସିଧା ତା'ପାଖକୁ ମୁହାଁଇଲା। ମିନି ଦଉଡ଼ିଲା। ତା ପଛେ ପଛେ ବଳଦ ଗୋଡ଼ାଇଛି। ଏକର ଦାଣ୍ଡ ମୁହଁରୁ ସେକର ଗମ୍ଭାରିକୁ ପଶିଲା। ବଳଦ ତା'ପଛରେ ପଶିଲା। ସେହି ଘରେ ଏକ ଉଚ୍ଚା ଖଟ ପଡ଼ିଥାଏ। ମିନି ସେ ଖଟ ଉପରକୁ ଚଢ଼ିଗଲା। ଖଟ କୋଣକୁ ଏକଦମ ଯାଇ ମଶାରି ବାଡ଼କୁ ଭିଡ଼ି ଧରିଲା। ବଳଦଟା ଘରେ

ପଶି ମୁଣ୍ଡ ହଲାଉଥାଏ। ଗୋରୁଟା ମାରିଦେବ ବୋଲି ମିନି ବୋଉ ପାଟି କରୁଥାଏ, ଗଲା ଗଲା, ଦେଲା ଦେଲା, ମାରି ଦେଲା। ଭାଇନା ଅତର୍କିଆ ଆସି ବଳଦକୁ ନେଇ ବାନ୍ଧି ଦେଲେ। ଆଉ ଥରେ ମଧ୍ୟ ସେହି ବଳଦ କ'ଣ କଲାନାଁ, ମିନିର ଖୁଡ଼ୀ ଝାଡ଼ା ଯାଇଥିଲେ। ସେ ବଳଦ ଫିଟିଥିଲା।



ମିନିର ଖୁଡ଼ୀକୁ ଏକ ମୁଣ୍ଡିଆ ଦେଲା ଯେ ସେ ଖଣ୍ଡେ ଦୂରରେ ପିଟିହୋଇ ପଡ଼ିଲେ। ତା'ପରେ ବହୁ କଷ୍ଟରେ ଉଠି ଆସି ସଜନା ଗଛ ମୂଳରେ ବସି କୁନ୍ଥାଉଥାନ୍ତି। ମିନି ବୋଉ ଯାଇ ଦେଖି ବ୍ୟସ୍ତ ହେଉଥାଏ। ଖୁଡ଼ୀଙ୍କର ବେକର ସୁନାହାର ସବୁ ଛିଣ୍ଡି ବାରିରେ ବିଛାଇ ହୋଇ ପଡ଼ିଥିଲା।

ବୋଉମା'ର ମାଙ୍କଡ଼ଟିଏ ମଧ୍ୟ ଥିଲା। ମାଙ୍କଡ଼ ଶିକୁଳିରେ ବନ୍ଧା ହୋଇ ରହିଥାଏ। ଦିନେ ମାଙ୍କଡ଼ ଫିଟି ଥାଏ। ମିନିର ପିଉସୀ ଝିଅ ଆସିଥାଏ। ମାଙ୍କଡ଼ଟା ଆସି ତାକୁ ଧରିଲା। ସେ ତଳେ ଗଡ଼େଇ ହୋଉଥାଏ। ମାଙ୍କଡ଼ କାମୁଡ଼ିବାରେ ଲାଗିଥାଏ। ସେ ବୋଉଲୋ ବୋଉଲୋ କହି ଚିତ୍କାର କରୁଥାଏ। ବୋଉମା ଆସିଲା। ମାଙ୍କଡ଼କୁ ଛଡ଼ାଇ ନେଇ ବାନ୍ଧିଲା। ମିନିର ସେ ମାଙ୍କଡ଼କୁ ଆଉ ବଳଦକୁ ଭାରି ଡ଼ର ଥାଏ। ଦିନେ ତା'ର ଗାଁରେ ମିନି ତାର ଦୁଇ ଭଉଣୀ ମିଶି ବାରିଆଡ଼େ ପାଇଖାନା ଯାଇଥିଲେ। ତିନିହେଁ ବାରିରୁ ଘରକୁ ଆସୁଥିଲେ। ତା'ଗାଁରେ ବହୁତ ପାତିମାଙ୍କଡ଼ ଥାନ୍ତି। ବାରିରୁ ଘରକୁ ଆସିବା ଅଧାବାଟରେ ଗୋଟିଏ ବଡ଼ ପାତିମାଙ୍କଡ଼ ''ଆଁ'' କରି ଆସିଲା। ତିନି ଭଉଣୀଯାକ ଭେଁ ଭେଁ କରି କାନ୍ଦି ଉଠିଲେ। ମିନି ବାପା ବୋଉ ଘର ଭିତରୁ ଦଉଡ଼ି ଚାଲି ଆସିଲେ। ତାଙ୍କୁ ଦେଖି ମାଙ୍କଡ଼ ଚାଲିଗଲା। ସେମାନେ ଘରକୁ ଆସିଲେ। ଘରେ ଆସି ବହେ ଲେଖାଏଁ ହସିଲେ। ବାରିରେ

ଯେତେ ଛନ୍ଦି, ଛଡ଼ିନ୍ଦ୍ରା ଫଳୁଥିଲା ସବୁ ମାଙ୍କଡ଼ମାନେ ନଷ୍ଟ ଭ୍ରଷ୍ଟ କରୁଥିଲେ । ଅଧା ଖାଇ ଅଧା ପୋପାଡୁଥିଲେ ।

— ୪ —

ମିନି ତା ଜେଜେମା ପାଖରେ ବସି ଗୁଣ ସାଗର, ରାସକ୍ରୀଡ଼ା ଭାଗବତ ପଢୁଥାଏ । ମହାଭାରତ ମଧ ପଢ଼େ । ଜେଜେମା ସବୁ ବୁଝାଇ ଦିଅନ୍ତି । ମିନି ଭଲ କରି ନ ବୁଝିଲା ଯାଏଁ ତାର ମନ ଆଉ ବୁଝେ ନାହିଁ । କାର୍ତ୍ତିକ ମାସରେ ଜେଜେମା ହବିଷ କରନ୍ତି । କାର୍ତ୍ତିକ ମାହାତ୍ମ୍ୟ ପଢ଼ାହୁଏ । ମିନି ଶୁଣେ । ପୁରୋହିତ କାର୍ତ୍ତିକ ମାହାତ୍ମ୍ୟ ପ୍ରତି ଘରେ ଆସି ପଢ଼ିଯାନ୍ତି । ମାସ ଶେଷରେ ଛଣ୍ଟା ପଇସା ନିଅନ୍ତି । ମିନିର ଜଣେ ନୂଆବୋଉ ବଙ୍ଗଳା



ରାମାୟଣ ପଢୁଥାନ୍ତି। ଜେଜେମା ଯାଇ ଶୁଣନ୍ତି। ମିନି ମଧ୍ୟ ଯାଇ ଶୁଣେ। ସେତେ ବୁଝି ପାରେ ନାହିଁ। ତାର ମନ ହୁଏ ସେ ବଙ୍ଗଳା କେମିତି ପଢ଼ି ପାରନ୍ତା। ବହିଟା ଓଡ଼ିଆରେ ନ ହୋଇ ବଙ୍ଗଳାରେ କାହିଁକି ହେଲା ? ସେ ପଢ଼ିପାରୁ ନାହିଁ, ବୁଝି ପାରୁ ନାହିଁ। ଭାଗବତ ଥରକୁ ଥର ପଢ଼ି ବେଶ୍ ବୁଝି ପାରୁଥାଏ। ମିନିର ବଡ଼ବାପାଙ୍କୁ ଜେଜେମା କହି ଦିଅନ୍ତି, କି ସୁନ୍ଦର ଭାଗବତ ପଢୁଛିରେ ପୁଅ। ମୋତେ ଶୁଣାଉଛି। ବଡ଼ବାପା କହନ୍ତି, ପଢ଼ିଲୁ ମା, ଆ, ଆ ଭାଗବତଟା ଆଣେ। ମୁଁ ଶୁଣିବି। ମିନି ପଢ଼ିଚାଲେ। ବଡ଼ବାପା ଶୁଣି ତୃପ୍ତ ହୁଅନ୍ତି। ଏପରି କେତେ ଅଧ୍ୟାୟ ଭାଗବତ ମିନିଠାରୁ ଶୁଣିଛନ୍ତି, ସେହି କେତେ ଦିନ ଭିତରେ ତା'ର ବଡ଼ବାପା ମରିଗଲେ। ମିନିର ମନ ଭାରି ଦୁଃଖ ହେଲା। ବଡ଼ବାପା କେତେ ଗେହ୍ଲା କରି ଡ଼ାକୁଥିଲେ। ଭାଗବତ ଶୁଣୁଥିଲେ। ମିନିର ବଡ଼ବାପାଙ୍କର ସବା ସାନ ଝିଅଟା ମିନିଠାରୁ ବର୍ଷେ ସାନ ହେବ। ସେ ଭାରି ଉଦ୍ଦଣ୍ଡୀ ହୋଇଥିଲା। ତାକୁ ଯେତେ କହିଲେ ସେ ଭାଗବତ ପଢ଼େ ନାହିଁ, ଶୁଣେ ନାହିଁ। ତେଣୁ ମିନିର ବଡ଼ବାପା ତା'ଉପରେ ରାଗନ୍ତି। ଦୁଃଖ କରନ୍ତି।

ବଡ଼ବାପା ମଲା ଦିନରୁ ଜେଜେମା ବଡ଼ ଦୁଃଖୀ ହୋଇ ପଡ଼ିଲେ। ମିନିବାପା ତାଙ୍କର ସାନ ପୁଅ। ସାନ ପୁଅ ପାଖରେ ଯେତେ ଭଲରେ ରହିଲେ ମଧ୍ୟ ମନ ଦୁଃଖରେ ଥାଆନ୍ତି। ସାନ ନାତି ନାତୁଣୀମାନଙ୍କର କଥାରେ ମନ ଭୁଲାନ୍ତି। ମିନି ରଥଯାତ୍ରା ବେଳକୁ ତା'ଗାଁରୁ ବଡ଼ବାପାଙ୍କ ଗାଁକୁ ଗଲା ଖୁଡ଼ୀ, ମାମା, ନୂଆମା, ବୋଉମାଙ୍କ ସହିତ। ସୋଲି ନାଁରେ ହଳିଆଟାଏ ଯାଇଥିଲା। ଏମାନେ ବଡ଼ଦାଣ୍ଡରେ ଚାଲିଥାନ୍ତି। ମିନି ମଧ୍ୟ ଚାଲିଥାଏ। ବହୁତ ଦୂର ଲାଗୁଥାଏ, ବଡ଼ ବଡ଼ ଢ଼ିମା ପଥର ସବୁ ବଡ଼ଦାଣ୍ଡରେ ବାହାରି ଥାଏ। ମାମା କହନ୍ତି, ସୋଲିରେ! କାଖେଇ ପକାରେ। ସୋଲି କାଖାଏ ମିନିକୁ, ପୁଣି ଓହ୍ଲେଇଦିଏ ତା'କାଖରୁ। ମିନି ଚାଲେ ସମସ୍ତଙ୍କ ସହିତ। ନୂଆମା କହନ୍ତି ଆରେ ସୋଲି କାଖାରେ, ତାର ରକ୍ତ ଗଡ଼ିଯିବରେ! ସୋଲି କହେ, ମାଆ ସେତ କାଖ ହେଉ ନାହାନ୍ତି, ମୁଁ କ'ଣ କରିବି ? ସମସ୍ତେ ଚାଲିଥାଆନ୍ତି। ଜଗନ୍ନାଥଙ୍କୁ ଦେଖି ଫେରିଲେ। କିଏ କୁଆଡ଼େ ଶୋଇଲେ। ମିନି ଜେଜେମା ପାଖରେ ଶୋଇଲା। ଦୀପଟି ଜଳୁଥାଏ ଦ୍ୱାର ବନ୍ଧ ଉପରେ। ନିଦ ଆଦୌ ଆଖିକୁ ଆସୁ ନଥାଏ। ବୋଉକୁ ଛାଡ଼ି ଆସିଛି, ବୋଉ ଆସି ନଥାଏ, ପିଲା ସାନ। ମାଆର ଥୋଡ଼ି ଧରି କହୁଥାଏ, ଏ ମା', ବୋଉ ପାଖକୁ ଯିବି, ମା' ବୋଉ ପାଖକୁ ଯିବି। କେତେ କଷ୍ଟ ସେ ରାତି! ମା ନିଦରେ ହୁଁ ହୁଁ କରୁଥାନ୍ତି।

ବିଦେଶଗାଁରେ ଆଉ ଗୋଟିଏ ବ୍ରାହ୍ମଣପରିବାର ଥାଆନ୍ତି। ଭଲ ଘର। ପୁଅମାନେ ସହରରେ ଚାକିରି କରୁଥାନ୍ତି। କିଏ ପାଠ ପଢୁଥାନ୍ତି। ବାପା, ମା, ପାଞ୍ଚ ପୁଅ। ସବା ସାନଟି ଝିଅ। ତା ନାମ ପୁଷ୍ପାଞ୍ଜଳି। ଦେଖିବାକୁ ଖୁବ୍ ସୁନ୍ଦର। ଯେମିତି କହନ୍ତି, ଗୋଟିଏ ଚାଉଳରେ ଗଢ଼ା। ଚମ୍ପା ଫୁଲ ପରି ରଙ୍ଗ। ମିନି ଠାରୁ ଦୁଇ ବର୍ଷ ସାନ ହେବ। ମିନିର ଭଉଣୀ ବିନିର ପୁଷ୍ପ ବେଶି ସାଙ୍ଗ। ପୁଷ୍ପର ଘର ତିନି ମହଲା। ଉପର ମହଲାରେ କଣ୍ଢେଇ ସଜେଇ ରଖିଥାନ୍ତି। ପୁଷ୍ପର ତିନି ଜଣ ଭାଉଜ ଆସିଥାନ୍ତି। ଆଉ ଦୁଇ ଭାଇ ବାହା ହୋଇ ନଥାନ୍ତି। ପୁଷ୍ପର ବୋଉ ଭାରି ଭଲ। ବୋହୂମାନେ ରନ୍ଧାବଢ଼ା କରନ୍ତି। ସେ ନାଡି ତାତୁଣୀକୁ ଧରି ବସନ୍ତି। ବାହାରୁ ପାଣିଟାଏ କୂଅରୁ ବା ନଈରୁ ଆଣନ୍ତି। ମିନିବୋଉ ସାଙ୍ଗରେ ତାଙ୍କର ମଧ୍ୟ ବେଶ୍ ମେଳ। ତାଙ୍କ ବଡ଼ବୋହୂ ରଥଘର ଝିଅ। ରଥଘର ବଡ଼ସହରର ବଡ଼ଲୋକ। ତେଣୁ ସେ କେବେ ରନ୍ଧାବଢ଼ା କରନ୍ତି ନାହିଁ ବୋଲି ପୁଷ୍ପର ବୋଉ କହନ୍ତି। ପୁଷ୍ପର ବଡ଼ଭାଉଜ ସହରରୁ ଗାଁକୁ ଆସିଥାଆନ୍ତି। ପୁଅ ଝିଅ ତିନୋଟି ତାଙ୍କର। ଯେମିତି ଆସିଲେ ତା'ପରଦିନ ମିନିବୋଉ ପାଖକୁ ଆସିଲେ। ତାଙ୍କ ବୋଉଙ୍କୁ ମିନିବୋଉ ଜାଣନ୍ତି। ମିନିବୋଉ ସାଙ୍ଗେ ଚିହ୍ନା ପରିଚୟ ସବୁ କରୁଥାନ୍ତି, ମିନିର ବୋଉତ କେବେ ହେଲେ କାହା ଘରକୁ ଯାଆନ୍ତି ନାହିଁ।

ମିନିବୋଉ ଥରେ ବାସନ୍ତୀକୁ ପଚାରିଲେ, ତମର ମାଣ୍ଡିଆ ଯାଉ ହୁଏ କି? ବାସନ୍ତୀ କହିଲା ଆମର ସେ ଜିନିଷ ନ ହେଲେ ନ ଚଳେ। ସବୁବେଳେ ହୁଏ। ବାସନ୍ତୀ ଯାଇ ତା'ବୋଉକୁ କହିଲା। ତା ବୋଉ ତା'ପରଦିନ ମାଣ୍ଡିଆ ଯାଉ କଂସାଏ, ଦହି, ଶୁଖୁଆ ଭଜା ବେସର, କେତେ ପ୍ରକାରର ଭଜା ପଠାଇଦେଲେ। ବାସନ୍ତୀ ଧରି ଆସିଲା। ମିନିର ବୋଉ କହିଲେ, ମୁଁ କ'ଣ ଏତେ ଜିନିଷ ପାଇଁ କହିଥିଲି? ଯାଉ ଟିକିଏ ଆଣିବାକୁ ସିନା କହିଥିଲି।

ଏହିପରି ଦୁଇମାସ, କାର୍ତ୍ତିକ ମାସରୁ ସପ୍ତାହକରୁ ବେଶି, ଆଉ ମାର୍ଗଶୀର ମାସଟା, ପୁଷ ମାସରୁ ଅଧା ରହିଲେ ସେ ଗାଁରେ। ବ୍ରାହ୍ମଣଘରମାନଙ୍କରୁ ପ୍ରତି ଲୋଡ଼ା ପୁନେଇଁ ପର୍ବରେ ଏତେ ଖାଇବା ଜିନିଷ ମିନିଘରକୁ ଆସେ ଯେ, ସେମାନେ ଆଉ ଖାଇ ପାରନ୍ତି ନାହିଁ। ଆକୁ ତାକୁ ବାଣ୍ଟି ଦିଅନ୍ତି। ଶେଷ ପାଳି ଗୁରୁବାରକୁ ବାର ପ୍ରକାରର ପିଠାପଣା ହୁଏ।

ପୁଷ ମାସର ସମରଦଶମୀକୁ ଅନେକ ପ୍ରକାରର କରିଥାନ୍ତି। ସେ ସବୁ ଦିଅନ୍ତି। ମିନିଘର ମଧ୍ୟ ପିଠାପଣା କରି ପଠାନ୍ତି ଭଲ ଭାବରେ।

ସେମାନଙ୍କର ପିଠା ସବୁ ବାଦାମ ତେଲରେ ଛଣାଯାଇଥାଏ। ତେଣୁ ଏତେ ଘରୁ ଏତେ ପ୍ରକାରର ଜିନିଷ ଆସିଲେ ମିନିବାପାଙ୍କୁ ଭଲ ଲାଗେ ନାହିଁ। ତେଲ ଜିନିଷ ଖାଇଲେ ପିଲାଙ୍କର ପେଟ ଖରାପ ହେବବୋଲି ଭାବନ୍ତି। ସ୍ନେହରେ କିଛି ନ କହି ରଖନ୍ତି। ଯାହାକୁ ଦବାନବାର ଥାଏ ବାଣ୍ଟି ଦିଅନ୍ତି। ଏହିପରି ଦୁଇମାସ ପରେ ଆଉ ଏକ ଯାଗାକୁ ବଦଳି ହୋଇଗଲେ। ସେଠି ମିନିର ଫଗୁଣ ମାସରେ ସବା ସାନ ଭାଇଟି ଜନ୍ମ ହେଲା। ସେଠାରେ କେବଳ ଗୋଟିଏ ବଖରା ଘର। ଆଉ, ବାରି କରକୁ ରୋଷେଇ କରିବା ପାଇଁ ପଲାଟିଏ ତିଆରି କଲେ। ସେ ଗାଁରେ ନଈ ନାହିଁ। ମାଇଲିଏ ଦୂରରେ ପୋଖରୀ ତିନିଟା କି ଚାରିଟା। ତେଲେଙ୍ଗାବ୍ରାହ୍ମଣ ଦୁଇ ସାଇ ଯାକ। ଶେଷରେ ଗୋଟିଏ ଦୁଇଟି ଓଡ଼ିଆବ୍ରାହ୍ମଣ ଘର। ତେଲେଙ୍ଗା ବ୍ରାହ୍ମଣଙ୍କୁ କମ୍ମା ବ୍ରାହ୍ମଣ କହନ୍ତି। ମିନିଘର ସାମ୍ନାରେ କମ୍ମାଘର, ମିନି ବୟସର ଝିଅଟାଏ, ମିନିଠାରୁ ମୋଟାମୋଟି ଲମ୍ବା ମଧ। ସେ ମିନିକୁ ଦେଖି ଆସି ସାଙ୍ଗ ହେଲା। ହାର୍‌ମୋନିୟମ୍ ଶିଖିଥାଏ। ଗୀତ ଗାଏ ପ୍ରତିଦିନ ସଂଜରେ, ଖରାବେଳେ। ତା'ଆଈ ମିନି ସାଙ୍ଗରେ ତାକୁ ସଙ୍ଗାତ ବସାଇ ଦେଲେ। କମ୍ମାମାନେ ଚାରୁ, ଚଲ୍ଲା, ପାଚେଡ଼ି ଖାଆନ୍ତି। ପିତଳର ଛୋଟ ଛୋଟ ତସଲାରେ ରାନ୍ଧନ୍ତି। ପିତଳ ତସଲାଟିମାନ ହାଣ୍ଡିଆକାର ଗଢ଼ଣ, କୋରେଇ ପରି ମୁହଁ। ଡ଼ାଲି ହାଣ୍ଡି, ଭାତ ହାଣ୍ଡି, ତରକାରି ହାଣ୍ଡି ଅଲଗା ଅଲଗା। ଦି'ଓଳି ଭଣ୍ଡାରୁଣୀ ମାଜି ଦିଏ। କମ୍ମାମାନେ ପଖାଳ ଖାଆନ୍ତି ନାହିଁ କିମ୍ୱା ମାଟି ହାଣ୍ଡିରେ ରାନ୍ଧନ୍ତି ନାହିଁ। ମାଟି ହାଣ୍ଡିରେ ରାନ୍ଧିଲେ ଖାଇବା ମାରା ହୋଇଯାଏ। ମଠା ବା କାଣିଆ ପିନ୍ଧି ରାନ୍ଧନ୍ତି। ରୋଷେଇ କରିବା ସମୟରେ ପରିସ୍ରା ଲାଗିଲେ ସେ ସ୍ତ୍ରୀଲୋକମାନେ ପରିସ୍ରା କରିସାରି ଆଉଥରେ ଗାଧୁଆନ୍ତି। କମ୍ମା ସ୍ତ୍ରୀଲୋକମାନଙ୍କୁ କମ୍ମାଣୀ କୁହନ୍ତି। ତାଙ୍କର ପୋଖରୀ ଅଲଗା। ସେ ପୋଖରୀରେ ମଇଳା ନଥାଏ। କମ୍ମା ତୁଠ ବୋଲି ଅଲଗା ତୁଠ ଥାଏ। ନିଜ ନିଜ ମୁଣ୍ଡରେ ମୁଣ୍ଡାଇ ପାଣି ଆଣନ୍ତି। ଓଡ଼ିଆ ବ୍ରାହ୍ମଣଙ୍କଠାରୁ ମଧ ସେମାନେ ପାଣି ଖାଆନ୍ତି ନାହିଁ। ଦୁଇ ସାଇ ଭିତରେ ଅଙ୍କ ଓସାରିଆ ଦାଣ୍ଡଟି। ସେଠି କେତେ ଲୋକ କହନ୍ତି, ଚାରୁ, ଚଟଣୀ, ଚଲ୍ଲା, କମ୍ମା ନ ଖାଇ ମଲା। ଓଡ଼ିଆଙ୍କର ଏତେ ପ୍ରକାର ପରିବା ପତ୍ର ରୋଷେଇ ପରି ସେମାନେ କରନ୍ତି ନାହିଁ। କମ୍ମାମାନେ ସବୁବେଳେ ଅରୁଆ ଖାଆନ୍ତି।

କମଳା ବୋଲି ଭଣ୍ଡାରୁଣୀ ଝିଅଟାଏ ମିନିଘରେ ପାଣି ଦିଏ। ମିନି ପ୍ରଭୃତିଙ୍କୁ ପୋଖରୀ ଆଡ଼େ ଗାଧୋଇ ନିଏ। ମିନିର ଛୋଟ ଭାଇଟିର ଲୁଗାପଟା ପୋଖରୀରେ ଧୋଇଆଣେ। ମିନିବୋଉ କମଳାକୁ ଖାଇବାକୁ ଦିଅନ୍ତି। ଖରାଦିନ ହୋଇ ଆସୁଥାଏ। କମଳା କମ୍ମା ସାଇର ଯେତିକି ବାସନ, ମାଜେ। ପାଣି

ପୋଖରୀରୁ ଆଣେ। ପ୍ରାୟ ମିନିଘରେ ଖାଏ। ଯୋଉ ଦିନ ନ ଖାଇ ଥାଏ, ଖରାବେଳେ ଆସି କହେ—ମା, ଓ ମା, ଦିଅ ଯାହା ଅଛି। ଭାରି ଭୋକ ହେଉଛି। ସେଇ କମ୍ପା ସାହିରେ ଆଷାଢ଼ ମାସରେ ରଥଯାତ୍ରା ହେଲା। ରଥ ଚାଲିଲା ଗୁଣ୍ଡିଚା ଘରକୁ। ରଥକୁ ଜଗନ୍ନାଥଙ୍କୁ ଯେମିତି ଆଣନ୍ତି ପଣ୍ଡାମାନେ, ମିନି ସେଠାରେ ପ୍ରଥମେ ଦେଖିଲା। ଜଗନ୍ନାଥଙ୍କୁ କିପରି ନଚେଇ ନଚେଇ କଚାଡ଼ି ଦିଅନ୍ତି। ଅଳ୍ପ ଦୂରରେ ଗୁଣ୍ଡିଚାଘର। ଗୁଣ୍ଡିଚାଘର ଆରକରେ ବିଲଗୁଡ଼ାକ। ରଥ ଯାତ୍ରା ସରିଲା ପରେ ଗୁଣ୍ଡିଚାଘର ବନ୍ଦ ହୋଇଥାଏ।

ସଞ୍ଜବେଳେ ସଙ୍ଗାତ ଡ଼ାକିବ, ଆ ସଙ୍ଗାତ ଆମ ଘରକୁ। ତାର ମଧ ଛୋଟ ଭାଇଟାଏ ହୋଇଥାଏ। ସଙ୍ଗାତମା ମିନିର ଭାଇକୁ ଦେଖିବାକୁ ଆସିଲେ। ତା ଆଈ ଆସିଥାନ୍ତି। ସଙ୍ଗାତର ମା ତାଙ୍କରି ଗୋଟିଏ ବୋଲି ଝିଅ। ଝିଅ ପାଖରେ ରହନ୍ତି। ସଙ୍ଗାତର ଗୁଡ଼ାଏ ଭାଇ ଭଉଣୀ ହୋଇଥାନ୍ତି। କମ୍ପା ଘରମାନଙ୍କରେ ଗାଈ, ଛୁଆ ଜନ୍ମ କଲେ ସାଙ୍ଗେ ସାଙ୍ଗେ ଖିରକୁ ଦୁହିଁ ପୋଚା ଖିରକୁ ପୁଡ଼ିଙ୍ଗ ଭଳି ତିଆରି କରନ୍ତି। ସମସ୍ତଙ୍କୁ ବାଣ୍ଟନ୍ତି। କାହାର ଛୁଆଟିଏ ହେଲେ ତାକୁ ଦୋଳିରେ ପକାଇବାକୁ ଏକୋଇଶ ଦିନରେ ସମସ୍ତଙ୍କୁ ଡ଼ାକି ଆଣନ୍ତି। ପାଦରେ ହଳଦୀ ଲଗାଇ ଦିଅନ୍ତି। ସିନ୍ଦୂର ଲଗାଇ ଦିଅନ୍ତି। ପିଲାକୁ ଦୋଳିରେ ଶୁଆଇ ସମସ୍ତେ ମିଶି ଗୀତ ଗାଆନ୍ତି। ଆମର ଯେମିତି ହୁଳ ହୁଳି ଦିଅନ୍ତି, ସେମାନେ ଗୀତ ଗାଆନ୍ତି। ମିନିକୁ ବଡ଼ ମଜା ଲାଗେ। ନୂଆ ନୂଆ ଲାଗେ।

ଥରେ ସୂର୍ଯ୍ୟ ପରାଗ ଲାଗିଥାଏ। ମିନିବୋଉ ପିଠା କରୁଥାନ୍ତି। ମିନିକୁ ମନା କରିଥାନ୍ତି ପରାଗ ନ ଦେଖିବାକୁ। ସଙ୍ଗାତ ଦେଖୁଥାଏ ସୂର୍ଯ୍ୟପରାଗ। ମିନିଘରକୁ ଆସି ଡ଼ାକିଲା। ମିନିର ଗୋଡ଼ରେ ଗୋଟେ ଘାଆ ବାହାରି ଥାଏ। ତାର ତ ସୋରିଷ ଭଳି ଘା'ଟିଏ ହେଲେ ତାକୁ ଆବୁ ଆକାର ଲାଗେ। ସେ ଘାଆଟିକୁ ଆଉଁଶି ଆଉଁଶି ଫୁଙ୍କି ଫୁଙ୍କି କାନ୍ଦୁଥାଏ। ସଙ୍ଗାତକୁ ଏତେ ଡ଼ାକି ଡ଼ାକି କାହିଁକି ଆସୁନାହିଁ କହି ସଙ୍ଗାତ ଦେଖିବାକୁ ଘର ଭିତରକୁ ଆସିଲା। ଦେଖି ଦେଖି ଘା'ଟି ଛୋଟିଆ ଟମାଟୋ ପରି ଟୁମୁ ଟୁମୁ ହୋଇଗଲାଣି। ଅବଶ୍ୟ ବହୁତ କଷ୍ଟ ହେଉଥାଏ। ସଙ୍ଗାତ ଆସି ପାଖରେ ବସିଲା। ଏମିତି ପ୍ରତିଦିନ ଥରେ ଦି'ଥର ସଙ୍ଗାତ ଡ଼ାକିବାକୁ ଆସିବ, ସଙ୍ଗାତ ଆ ଗାଧୋଇ ଯିବୁ; ସଙ୍ଗାତ ଆ ଘରକୁ ଆ। ଭଲ ଓଡ଼ିଆ କଥା ଆସେ ନାହିଁ। ଦଶମାସ ରହଣି ପରେ ମିନି ପରିବାରକୁ ସେମାନେ ନିଜର ବୋଲି କରି ନେଇଥିଲେ। ସଙ୍ଗାତର ଆଈ ମଧ ମିନିବୋଉ ପାଖରେ ଆସି ବସନ୍ତି। ମିନିଘର କଟକ ଚାଲିଯିବେ ବୋଲି, ସଙ୍ଗାତ, ତା ମା, ଆଈ, ଭାଇ, ଭଉଣୀ ସବୁ ଜାଣିଲେ।

ସଙ୍ଗାତ ପଚାରିଲା, ତମେ ସବୁ କଟକ ଯିବ ସଙ୍ଗାତ? ତାଙ୍କ ପଡ଼ିଶା ଘର ପାଣ୍ଡୁର ମାଆ। ସେ କହିଲେ, ଝିଅ ତୁମେ ସବୁ ପଳେଇବ? ମିନି ପାଇଁ ହାତରେ ସିଲାଇ କରି ଗୋଟିଏ ବ୍ଲାଉଜ୍ ତିଆରି କରିଦେଲେ। ମିନିବୋଉ ପାଣ୍ଡୁର ମା'ଙ୍କ ପାଖରେ ଘରକରଣୀ ଜିନିଷ ସବୁ ଛାଡ଼ି ଆସିଲେ, ଶିଳ, ପେଷଣା, ଘୋରଣା, କଂସା ବାସନ କେତେ କ'ଣ, ଅତି ବିଶ୍ୱାସରେ।

— ୬ —

ମିନିବାପା ଆସିଲେ ମା'ଙ୍କୁ ଧରି। ପିଲାମାନଙ୍କୁ ନେବେ। ମିନିବୋଉ ବାଧ୍ୟରେ ତିଆରି ହେଲେ। ଛୋଟ ପିଲାଙ୍କୁ ଧରି କେମିତି ଏତେ ଦୂରକୁ ଯିବା? ମିନି ରେଳ ଗାଡ଼ି ଦେଖି ନଥାଏ। ତାର ଜଣେ ଭାଇନା, ଗୌର ଭାଇନା ଆସି ପେଣ୍ଠ ଗାଁରେ କହିଲେ, ଆରେ ପିଲାଏ ତମେ ମାନେ ରେଳଗାଡ଼ିରେ ଯିବରେ କଟକ। ଆଖି ବୁଜି ବସିବଟି। ନ ହେଲେ ମୁଣ୍ଡ ବୁଲାଇବ। ବାନ୍ତି ହେବ। ମିନି ଭାବେ ସତେ ବାନ୍ତି ହେବ? ମୁଣ୍ଡ ବୁଲାଇବ? ସେମାନେ ଯେତେବେଳେ ସେ ଗାଁ ଛାଡ଼ି ଯିବାକୁ ବାହାରିଲେ, ବଳଦ ଗାଡ଼ିରେ ବସିଲେ। ମିନିର କଲ୍ୟାଣୀ ସଙ୍ଗାତ ରାଜୁଡ଼ି ତା ଦାଣ୍ଡ ଦୁଆରେ ଠିଆ ହୋଇ କହିଲା, ସଙ୍ଗାତ ଯାଉଛ, ଯା'। ବଳଦ ଗାଡ଼ିରୁ ବସ୍‌ରେ। ବସ୍‌ରୁ ରେଳ ଗାଡ଼ିରେ ବସିଲେ। ମିନିକୁ କିନ୍ତୁ ରେଳ ଗାଡ଼ିର ହର୍ଣ୍ଣଟା ଡର ଲାଗିଲା। ତା'ପରେ ରେଳ ଗାଡ଼ିରେ ବେଶି କିଛି ଖରାପ ଲାଗିଲା



ନାହିଁ। ଢେଙ୍କେମା'ଙ୍କୁ ପାଖରେ ଧରି ମିନିବୋଉ ପ୍ରଭୃତି ଗାଡ଼ିରେ ବସିଲେ। ସେଠୁ ତାଙ୍କର ରେଳ ଯାତ୍ରା ଚାଲିଲା। କେତେ ପାହାଡ଼, ନଈ, ନାଳ, ଚିଲିକା ଦେଖାଗଲା। ରେଳ ଯାତ୍ରା ସରିଲା। ସହରରେ ପହଞ୍ଚିଲେ। ମିନି ତ କଟକ ସହର ଶୁଣିଥାଏ ମାତ୍ର। ଘୋଡ଼ା ଗାଡ଼ିରେ ଭୋରୁ ଭୋରୁ ବସିଲେ। ଘୋଡ଼ା ଗାଡ଼ି ଚାଲିଲା। ଡ଼ଗର ପଡ଼ା, ମଙ୍ଗଳା ସାହି। ଶୀତ ପଡ଼ିଥାଏ। ସହର କୋଠା ଘର ସବୁ ଆଶ୍ଚର୍ଯ୍ୟ ଲାଗୁଥାଏ ପିଲାମାନଙ୍କୁ। ଭଡ଼ା ଘର ବସାରେ ପହଞ୍ଚିଲେ। ପାହାନ୍ତା ହୋଇ ଆସୁଥିଲା। ଗାଡ଼ିବାଲା ଜିନିଷ ପତ୍ର ଓହ୍ଲାଇଲା।

କୂଅ ଥାଇ ଭଲ ଘର, ପାଇଖାନା, ଗାଧୁଆ ଘର। ମୁସ୍କିଲ୍ କଥା, ବୁଢ଼ୀ, ବିନି, ମିନିଙ୍କର ପାଣି କୂଅରୁ ଟାଣିବା ଅଭ୍ୟାସ ନଥାଏ। ମିନିବୋଉ ଗରା ପକାଇ ପାଣି ଟାଣନ୍ତି। ହାତରେ ରଙ୍କା ପଡେ। ମିନିବାପା ପାଣି ଟାଣନ୍ତି। ଆଉ କାହାକୁ କାମ କରିବାକୁ ସ୍ତ୍ରୀ ଲୋକ ବୁଝିବାରୁ ମାସରେ ଚାରି ଟଙ୍କା ନେବ ବୋଲି କହିଲା। ମିନିବାପାଙ୍କର ଦରମା ଅଶି ନବେ ଟଙ୍କା। ସେଥିରୁ ଘର ଭଡ଼ା ପନ୍ଦର ଟଙ୍କା। ସେଥିରେ ପରିବା ପତ୍ର ଯୋଉ ମହରଗ ! ଡ଼ାଲି ଚାଉଳ କିଣିବେ। ଖାଇବେ କ'ଣ ? ବାଇଗଣ ଗୋଟାଏ ଏକ ଅଣା। ଯୋଉ ଦିନ ବସାଘରେ ପହଞ୍ଚିଲେ, ଦେଖିଲେ ଗୋଟିଏ ହାଣ୍ଡିରେ ବଗଡ଼ା ଚାଉଳ ଗଣ୍ଡାଏ ଆଉ ଗୋଟେ ହାଣ୍ଡିରେ କିଛି ମୁଗଡ଼ାଲି ପଡ଼ିଛି। ସେ ଚାଉଳ ଡ଼ାଲି ଦେଖି ମିନିବୋଉର ହାଲୁକ ଶୁଖିଗଲା। ସେ ଭାବିଲେ କେମିତି ସାହସରେ ଏ ସହରକୁ ପିଲାଛୁଆ ଧରି ଆସିଲେ ? କ'ଣ ଖାଇବେ ? ଏମାନେ ଦୁଧ ପାଇବେ କୋଉଠୁଁ ? ପାଖରେ ଅବଶ୍ୟ ଗଉଡ଼ ଘରଟାଏ ଥାଏ। ବେଶ ଚ଼ଳନ୍ତି ଘର। ସେଠୁ ଦୁଧ ନିଅନ୍ତି। ହେଲେ ମଧ ପାଣି। ମିନିର ସାନ ଭାଇଟିକୁ ଏକା ଅଣ୍ଟେ ନାହିଁ। ବଡ଼ ସହରକୁ ଆସିବା ପୂର୍ବରୁ ମିନିବୋଉ ମନା କରୁଥିଲେ ଯିବେ ନାହିଁ ବୋଲି। ଜିନିଷ ପତ୍ର ଦରଦାମ, ଟଙ୍କା ଏତିକିରେ ଚଳିପାରିବେ ନାହିଁ ବୋଲି। ମିନିବୋଉକୁ କିଛି ନ ଜଣାଇ ମିନିବାପା ରେଭିନ୍ୟୁ ଇନ୍‌ସ୍‌ପେକ୍ଟର କାମକୁ ଛାଡ଼ିଦେଇ ଆଶା ପ୍ରେସ୍‌ରେ ହାଜର ହୋଇସାରି ଚିଠି ଲେଖିଲେ ଯେ, ମୁଁ ଯାଇ ତୁମମାନଙ୍କୁ ଆଣିବି। ମିନିର ବୋଉ ଢେଙ୍କେମା ଭାବିଲେ ସେ ଚାକିରି ଛାଡ଼ିଲେ କାହିଁକି ? ମିନିବାପା କାହା ଅଧୀନରେ କାମ କରିବାକୁ ଚାହୁଁ ନଥିଲେ। ଘର ଛାଡ଼ି ବର୍ଷଟିଏ ମାତ୍ର ଚାକିରି କରିଛନ୍ତି। ଏ ସହର ଛାଡ଼ି ବଡ଼ ସହରରେ ହାଜର। କଟକ ଚାକିରୀ ଜୀବନ କଷ୍ଟକର ହେଲା। ଡ଼ଗରପଡ଼ାରୁ ବାଖରାବାଦ ଆଶା ପ୍ରେସ୍‌କୁ ଚାଲି ଚାଲି ପ୍ରତିଦିନ ଯିବା ଆସିବା କରନ୍ତି ମିନିବାପା। ପାଖରେ ଗୋଟାଏ ଅନାଥ ଆଶ୍ରମ ଥିଲା। ବହୁତ ଅନାଥ ପିଲା ଥାଆନ୍ତି। ତାଙ୍କୁ ଚଳାଇବା

ପାଇଁ ମ୍ୟାନେଜର ଆଉ ତାଙ୍କ ସ୍ତ୍ରୀ ଥାଆନ୍ତି। ପୂଜାରୀ ଥାଏ, ଚାକର ମଧ୍ୟ ଥାଏ। ବହୁତ ବଡ଼ କୋଠା ଘର, ଦୁଇ ମହଲା।

ସେଠି ମ୍ୟାନେଜରଙ୍କ ସହ ମିନିବାପାଙ୍କର ପରିଚୟ ଥାଏ, ମ୍ୟାନେଜର ସ୍ତ୍ରୀକୁ ଧର୍ମ ଝିଅ କରିଥାନ୍ତି। ସେ ମିନିବୋଉ ପାଖକୁ ଆସନ୍ତି। ପିଲାଙ୍କୁ ଭାଇ ଭଉଣୀ ପରି ସ୍ନେହ କରନ୍ତି। ଆଉ ମିନି ଜେଜେମା'ଙ୍କୁ ଜେଜେମା କହନ୍ତି। ମ୍ୟାନେଜର ସ୍ତ୍ରୀଙ୍କ ନାମ ମଣିମାଳା ଦେଇ। ମ୍ୟାନେଜର ମଣି ମଣି ଡ଼ାକନ୍ତି। ବହୁତ ସିଲେଇ ପତ୍ର କରନ୍ତି ମଣି। ମିନି ଯାଇ ବେଳେ ବେଳେ ସିଲେଇ ପତ୍ର ଶିଖେ। ମାତ୍ର ବେଶି ଯାଏନି, କାରଣ ଘରେ ବୋଉକୁ ଟିକେ ସାହାଯ୍ୟ କରେ। ଜେଜେମା'ଙ୍କର ସେବା କରେ। ଆଉ ଚାକର ଚାକରାଣୀ ରଖିବାର କ୍ଷମତା ନଥାଏ। ସେହି ମଙ୍ଗଳା ସାହିରେ ବଳଦ ଗାଡ଼ିରେ ବସି ମିନି ବୟସର ଝିଅଟିମାନ ସ୍କୁଲ୍‌କୁ ପାଠ ପଢ଼ିବାକୁ ଯାଆନ୍ତି। ଫେରିଲାବେଳକୁ କିଏ କେତେ ରକମର ସିଲେଇ ପତ୍ର ବଳଦ ଗାଡ଼ି ଭିତରେ କରୁଥିବାର ମଧ୍ୟ ମିନି ଦେଖେ। ତା ମନ ହୁଏ ସେ ସ୍କୁଲ୍ ଯାଇ ଆଉ କିଛି ପାଠ ପଢ଼ନ୍ତା। ମାତ୍ର କିପରି ଯିବ? ଘରେ ତ ବୋଉ ପାଖରେ ସାହାଯ୍ୟ ପାଇଁ କେହି ନାହିଁ। ଜେଜେମା ଅତି ବୁଢ଼ୀ। ତାଙ୍କ କଥା ବୁଝିବ କିଏ? ବାପାଙ୍କର ତ ଦରମା ଏତିକି! ଚଳିବା କଷ୍ଟ ହେଉଛି। ପିଉସୀ ଆସି ଯଦି ରହନ୍ତେ ଭଲ ହୁଅନ୍ତା। ମାତ୍ର ଏତେ ଦୂର ପିଉସୀ-ଅପା ଆସିବେ କିପରି? ଏତେ କଥା ମିନିର ମନକୁ ଛୁଟୁଥିଲା। ତାର ପାଠ ପଢ଼ିବାର ଭାରି ଲୋଭ ଥିଲା। ତେଣୁ କିଛି ନ ହେବାରୁ ଏଆଡୁ ସେଆଡୁ ଲେଖି ବସେ। କିଛି ବହି ପଢ଼େ।

ଏହିପରି କଟକରେ କାଠଯୋଡ଼ୀ, ମହାନଦୀ, କଟକଚଣ୍ଡୀ ଆଉ କେତେକ ଜାଗା ଦେଖିଲା। ମିନି ବସାଘର ପାଖରେ କେତେ ଘର ଥିଲା। ସେମାନେ କୂଅରୁ ପାଣି ନେବାକୁ ଆସନ୍ତି। ଆଉ ଗୋଟିଏ ବୁଢ଼ୀଟିଏ ଗହମ ପେଷି ଦିଏ। ମିନିଘର ଚାରି ସେର ପେଷିଲେ ଚାରି ଅଣା ନିଏ। ମିନିକୁ ସେ ବୁଢ଼ୀଟି ଭଲ ଲାଗେ। ତା' ବୋଉମା ପରି ଲାଗେ। ମିନି ସେ ବୁଢ଼ୀଟି ସାଙ୍ଗରେ କୋଉ ରାଜାଙ୍କର ବଗିଚା ପୋଖରୀକୁ ଗାଧୋଇ ଯାଏ। ବୁଢ଼ୀଟି ସ୍ନେହରେ ଡ଼ାକେ, ଗାଧୋଇଯିବୁ? ମିନି ହଁ ମାରେ। ବୋଉକୁ ପଚାରି ଯାଏ। ବହୁତ ସ୍ତ୍ରୀ ଲୋକମାନେ ପୋଖରୀରେ ଗାଧୁଅନ୍ତି। ମିନି ଗାଧୁଏ। ଏତେ ଲୋକଙ୍କ ଆଗରେ ଏତେ ଭଲରେ ଲୁଗା ବଦଳାଏ ଯେ, ବୁଢ଼ୀଟି ଚାହିଁ ରହି ଖୁସି ହୁଏ। ଅନ୍ୟମାନଙ୍କୁ ବୁଢ଼ୀ ଠାରେ, ପିଲା ଝିଅଟିଏ କେମିତି ସଜାଡ଼ି ଲୁଗା ବଦଳାଉଛି! ବୁଢ଼ୀ ସାଙ୍ଗରେ ମିନିଘରକୁ ଫେରେ। କଟକ

ବସାଘରେ ବାରିରେ ବେଲ ଗଛଟାଏ ଥାଏ। ବେଲ ପାଚିଲେ ସାଇ ପଡ଼ିଶା ଝିଅମାନେ ସବୁ ପାରି ନିଅନ୍ତି। ମିନିଘରତ ବେଲ ଖାଇବା ଜାଣନ୍ତି ନାହିଁ। ପରେ ପଚାରି ବୁଝିଲେ ଯେ, ବେଲ ଖାଆନ୍ତି। ଖରା ଦିନେ ବେଲ ପଣା ହୁଏ। ସମସ୍ତେ ଖୁସିରେ ଖାଆନ୍ତି। କଞ୍ଚା କଦଳୀ ଗଛ ଥାଏ। କଦଳୀ ଫେଣାଏ ଦୁଇ ଫେଣା ପଡ଼ିଥାଏ। କଦଳୀ ଭଲ ହେଉ ନଥାଏ। ତେଣୁ ମଞ୍ଜା ଖାଆନ୍ତି।

ଏହିପରି କଟକରେ ରହିବା ବର୍ଷେ ହେବାକୁ ଦୁଇମାସ ବାକି ଥାଏ, ମିନିର ମଝିଆଁ ମାମୁଁଙ୍କ ବାହାଘରକୁ ଯିବା ପାଇଁ ମିନିର ବଡ଼ମାମୁଁ କଟକକୁ ଡ଼ାକି ଆସିଲେ। ମିନିର ବୋଉ ନିଶ୍ଚୟ ଯିବେ ଜିଦ୍ ଲଗାଇଲେ। ମିନିବାପା କେତେବେଳେ କହନ୍ତି ହଁ ଯିବ ତ କେତେବେଳେ ମନା କରିଦିଅନ୍ତି। ମିନି ମନ ତ ମାମୁଁଘର ଯିବାକୁ ଉଚ୍ଛାଟ ହେଉଥାଏ, ସେ ଓ ତା'ଭଉଣୀ ଦିହେଁ ଜେଜେମା'ଙ୍କ ସାଙ୍ଗେ ଲଗାନ୍ତି, ମା ତମେ ବାପାଙ୍କୁ ହଁ କର, ଆମେ ଯିବା। ଜେଜେମା'ଙ୍କର ଇଛା ନଥାଏ। କାରଣ ବନ୍ଧୁ ଘର ସେ ଯିବେ ନାହିଁ। ମିନିବୋଉ କହିଲେ ହଉ ତୁମେ ମା ପୁଅ ରହ, ମୁଁ ପିଲାଙ୍କୁ ନେଇ ନିଶ୍ଚୟ ଯିବି। ଏ କଟକ ସହରରେ ଏତିକି ଦିନ ରହି ଏତେ ଦହଗଞ୍ଜ ହେଲାଣି ମଣିଷ। ଏଠି ପୁଣି ଆହୁରି ରହିବି! ସେଠୁଁ ମିନି ଜେଜେମା ରାଜି ହେଲେ। ଭାବିଲେ ସତ ତ, ବୋହୂକୁ ଛାଡ଼ି ରହି ପାରିବି ନାହିଁ। ଏକେତ ଏତେ ବୁଢ଼ୀ ହେଲିଣି, ପୁଅ ପାଖରେ ମୁଁ ଚଳି ପାରିବି ନାହିଁ। ମୁଁ ତ ବାଇ ବୁଢ଼ୁଲା ହେଲି। ତୁମମାନଙ୍କୁ ହଇରାଣ କରୁଛି। ନ ମରି ତ ମୁଁ ଜିଇଁଛି କହି ବ୍ୟସ୍ତ ହୁଅନ୍ତି। ସେଠୁଁ ସମସ୍ତେ କଟକ ଛାଡ଼ିଲେ। ମାମୁଁଘର ଗାଁରେ ପହଞ୍ଚିଲେ। ମାମୁଁଙ୍କ ଗାଁରୁ କେତେ ଦୂର ବାଟ ସେଇ ଛୋଟିଆ ସହରରେ ଆସି ପହଞ୍ଚିଲେ। ସେ ସହରଟି ହଜାର ଘର ବସ୍ତି। ସେଠାରେ ମିନିର ସାନମାମୁଁ କାମ କରୁଥାନ୍ତି। ସେଠାରେ ତାଙ୍କର ବସାଘର ଥାଏ। ବଡ଼ମାମୁଁଙ୍କର ବ୍ୟବସାୟ। ଦୋକାନଥାଏ। ସେଠାରେ ତାଙ୍କର ବସାଘର। ନୂଆ ଘର ଗୋଟେ ମଧ୍ୟ ତିଆରି କରି ଥାଆନ୍ତି। ସେମାନେ ନୂଆ ଘରକୁ ଯାଇ ନଥାନ୍ତି। ବସାଘରେ ଥାଆନ୍ତି। ମିନିର ବିଧବା ମାଉସୀ, ଆଉ ଦୁଇଜଣ ମାମୁଁ, ଛୋଟ ମାଉସୀଟିଏ। ମାମୁଁ ବଡ଼ମାମୁଁଙ୍କ ଗଲା ଆଇଲା ଭଦ୍ର ଲୋକ କୁଣିଆମାନେ ପ୍ରାୟ ପ୍ରତିଦିନ ବସାରେ ପହଞ୍ଚନ୍ତି। ସେ ଚର୍ଚ୍ଚା ମାଉସୀ ତୁଲାନ୍ତି। ମିନିବୋଉ, ଜେଜେମା ସେ ବସା ଘରେ ପହଞ୍ଚିଲେ। ଆଉ, ପିଲାମାନେ। ସେ ବସାଘରଟି ରେଳଗାଡ଼ି ପରି। ବାରିଠୁଁ ଦାଣ୍ଡ ଯାଏଁ ଲମ୍ବା ଲମ୍ବା ଘର। ଦାଣ୍ଡ ଦୁଆରୁ ଜଣେ ଯଦି ଚାହିଁବ ବାରି ପର୍ଯ୍ୟନ୍ତ ଦେଖାଯାଏ। ବାରିପଟ, ଘରଠାରୁ ଟିକିଏ ଓସାରିଆ ଥାଏ।

ମିନି ଯେତେବେଳେ ତା'ମାମୁଁଙ୍କ ବସାଘରେ ପହଞ୍ଚିଲା ଦିନ ନଅଟା ସୁଦ୍ଧା, ରଜ ସଂକ୍ରାନ୍ତି ଯେ ମାଉସୀ ଏଣ୍ଡୁରି ପିଠା କରିଥାଏ। ଭାତ, ଡ଼ାଲି କେତେ ରକମର ହୋଇଥାଏ। ସାନ ମାଉସୀ ତାଙ୍କ ଶାଶୁ ଘରୁ ଆସିଥାନ୍ତି, ବାହାଘର ପାଇଁ ସମସ୍ତେ ମିଶି ଗାଁକୁ ଯିବେ। ସେ ଘର ଦେଖି ମିନିକୁ ଆଉ ସେ ଘରେ ରହିବାକୁ ଇଚ୍ଛା ହେଲା ନାହିଁ। ତାର ନିଶ୍ୱାସ ଯେପରି ରୁନ୍ଧି ହୋଇ ଯାଉଛି ତାକୁ ଲାଗିଲା। ମାଉସୀ ପିଠା ବାଢ଼ିଦେଲେ। ଖାଇଲା ନାହିଁ। ବାରିଦ୍ୱାର ମୁହଁରେ ଠିଆ ହୋଇ ରହିଲା। ଖଟା କମଳା ଗଛଟାଏ ବାରିଆଡ଼େ ଥାଏ। ବଡ଼ ବଡ଼ କମଳା, ଗଛରେ ବୋଝେଇ ହୋଇଥାଏ। ମିନି ସେ ଗଛକୁ ଚାହିଁ ରହିଥାଏ। ଖାଇବା ଲୋଭରେ ନୁହେଁ, ତାକୁ ଦେଖିବାକୁ ଭଲ ଲାଗୁଥିଲା। ମିନିର ମାଉସୀମାନେ, ବୋଉ ଯେତେ ଡ଼ାକିଲେ ମିନି ଘରକୁ ଗଲା ନାହିଁ। ମିନି କହିଲା, ମାମୁଁଘର ଗାଁକୁ କେତେବେଳେ ଯିବା ? ମାଉସୀ କହିଲେ—ଆଜି ତ ଯିବା। ମିନିକୁ ବଡ଼ ଅସ୍ୱସ୍ତି ଲାଗୁଥାଏ। ସବା ସାନମାମୁଁଟି ଏଗାର ବର୍ଷ ବୟସର। ସେ ଗାଁରୁ ଆସି ପହଞ୍ଚିଲେ, ଶଗଡ଼ ହଙ୍କିଆ ଧରି। ସାନଅପା ଯିବ ପରା ଗାଁକୁ? ଆଗେ ତାକୁ ନବାକୁ ଚାଲି ଆସିଲି। ବୋଉ ଓ ମାଉସୀ ରହିଲେ ବସା ଘରେ। ମିନିର ସାନମାଉସୀ ତାଙ୍କର ଛୋଟ ଝିଅ ଦୁଇଟିକୁ ଧରି ବାହାରିଲେ। ବଡ଼ମାଉସୀଙ୍କର ସେତେବେଳେ ଗାଁକୁ ଯିବାକୁ ଇଚ୍ଛା ହେଉ ନଥାଏ। କାରଣ ମିନିବୋଉ ଆସିଛନ୍ତି ଏତେ ଦିନେ, ବଡ଼ ଭଉଣୀକୁ ଛାଡ଼ି ଯିବାକୁ ମନ ହେଉ ନଥାଏ। କିଛି ଦୁଃଖ ସୁଖ କଥାବାର୍ତ୍ତା ହୋଇ ପାରିନାହାନ୍ତି। ବଡ଼ମାଉସୀ କହିଲେ ତୁ ଯା, ଅପା, ମୁଁ ଅଛୁଁ। ମୁଁ ଆଉ ଏକୁଟିଆ କିପରି ରହିବି? ସାନମାଉସୀ କାନ୍ଦି କାନ୍ଦି ଗଲେ। ତାଙ୍କ ସହ ମିନି, ସୁମୀ ମାଉସୀ ଓ ମାଉସୀଙ୍କର ଛୋଟ ଝିଅ ଦୁଇଟି ଗାଁକୁ ଗଲେ। ବଳଦ ଗାଡ଼ିରେ ମିନିକୁ ବସିବାକୁ ଭଲ ଲାଗେ। ସେ ଆନନ୍ଦରେ ମାମୁଁଘରକୁ ଗଲା। ଆଉ ବସାଘରେ କିଛି ଖିଆ ପିଆ କଲା ନାହିଁ। ମିନି ମାମୁଁଘର ଗାଁରେ ପହଞ୍ଚିଲା ରାତି ୭ଟା ହେବ। ମିନି ମାମୁଁଘର ଗାଁରେ ଚଷା, ତେଲି, ଗଉଡ଼, ଭଣ୍ଡାରୀ ଗୋଟେ ସାଇ। କରଣଙ୍କର ଗୋଟେ ସାଇ। ଦୁଇ ସାଇ ମଝିରେ ଗୋଟିଏ ଶଗଡ଼ ଚାଲିବା ରାସ୍ତା। ଦୁଇ ସାଇ ମୁହାଁ ମୁହିଁ। କରଣ ସାଇର ଉଚ୍ଚା ପିଣ୍ଡାଟିମାନ। ସାଇର ଶେଷ ଘରଟା ସ୍କୁଲ୍ ଘର। ମିନି ତା'ମାଉସୀ ତ ଗାଁରେ ପହଞ୍ଚିଲେ। ଆଈ ଓ ଆଉ ଜଣେ ମାଉସୀ ପାଛୋଟି ନେବାକୁ ଆସିଲେ। ଆଈ କହିଲେ ପାର୍ବତୀ ସେ ଦିନୁ ଆସିଲାଣି, ପୋଲସରାରେ ରହିଲା। ଗାଁକୁ ଆସିଲା ନାହିଁ। ଆଜି ତ ମୁଁ ସୁରକୁ ପଠାଇଲି, ଯା ଅପାକୁ ନେଇ ଆସିବୁ। ମିନିକୁ ଶ୍ରଦ୍ଧା କରି କୁଣ୍ଢାଇ ପକାଇଲେ। ଅଜା ଆଉ ଆଈ ମିନିକୁ ଭାରି ଭଲ ପାଉଥିଲେ। ସଞ୍ଜ ଦେଇସାରି କରଣ ସାଇରେ ଖରାଦିନେ ଖିଆପିଆ ହୋଇଥାଏ। ମିନିଅଜା

ପଚାରିଲେ, ବଡ଼ ଝିଅ କାହିଁକି ଆସିଲା ନାହିଁ? ଆଈ କହିଲେ ସେ ପରେ ଆସିବ। ବସାରେ କ'ଣ ଏକୁଟିଆ ଅପଛେଇ ରହିବ? ତେଣୁ ସେ ଦୁଇ ଭଉଣୀ ଆସିବେ।

— ୭ —

ମିନିଅଜାଙ୍କର ତିନି ଭାରିଯା। ପ୍ରଥମ ସ୍ତ୍ରୀଙ୍କର ପୁଅଟିଏ, ଝିଅଟିଏ। ପୁଅଟି ସାନ, ମରିଗଲା। ଝିଅଟିଏ ଥିଲା। ପ୍ରଥମ ସ୍ତ୍ରୀ ତାଙ୍କ ବାପା ଘରକୁ ଯାଇ ମରି ଯାଇଥିଲେ। ଆଉ ଦ୍ୱିତୀୟ ସ୍ତ୍ରୀ ହେଉଛନ୍ତି ମିନିର ଆଈ। ସେ ମଧ୍ୟ ପୁଅ ଝିଅ ଦଶଟି ଜନ୍ମ କରିସାରି ମରିଗଲେ। ମିନିବୋଉ ଓ ବଡ଼ମାଉସୀ ବଡ଼ ହୋଇ ଯାଇଥିଲେ। ପଚାଶ ବର୍ଷରେ ପୁଣି ମିନିଅଜା ବାହା ହେଲେ। ସେ ଆଈଙ୍କୁ ଯେତେବେଳେ ପନ୍ଦର ବର୍ଷ ମିନିଅଜାଙ୍କୁ ପଚାଶ ବର୍ଷ। ମିନିବୋଉଙ୍କ ଠାରୁ ମିନିର ତୃତୀୟ ଆଈ ଏକ ବର୍ଷ ସାନ। ସେ ମଧ୍ୟ ଆସି ଦଶଟି ସନ୍ତାନର ମା ହେଲେଣି। ମିନିଅଜା ପଞ୍ଚାନବେ ଛୟାନବେ ବର୍ଷ ବଞ୍ଚିଥିଲେ। ତୃତୀୟ ମା'ଙ୍କର ଏତେ ଗୁଡ଼ିଏ ପିଲା ଦେଖି ମିନିର ମାମୁଁ ଆଉ ବାହା ହେଲେନି। ମିନିବୋଉ ଆଉ ମିନିମାଉସୀ ସେତେ କନ୍ଦାକଟା କରି ବୁଝାଇ କହିଲେ, ତୁ ବଡ଼ ପୁଅ ବାପାଙ୍କର, ତୁ ବାହା ନହୋଇ କୁଳ ବୁଡ଼ାଇଲୁ, ମିନିର ବଡ଼ମାମୁଁ କିଛି କାନରେ ପୂରାଇଲେ ନାହିଁ। ତାଙ୍କଠାରୁ ସାନ ଭାଇମାନେ ଯେତେ କହିଲେ ତମେ ବାହା ନ ହେଲେ ଆମେ ବାହା ହେବୁ ନାହିଁ, ତା ଶୁଣିଲେ ନାହିଁ। ସେ କହିଲେ ମୁଁ ବାହାହୋଇ ସଂସାର କଲେ ଏ ସାନ ଭାଇ ଭଉଣୀମାନଙ୍କୁ କିଏ ଦେଖିବ? ବାପା ତ ଆମର ଏ ବୟସରେ ଏମାନଙ୍କୁ ଅର୍ଜନ କରି ବସିଛନ୍ତି। ଜାଣୁ ଜାଣୁ ଏ ପିଲାଗୁଡ଼ାକ ଦାଣ୍ଡରେ ଭିକାରୀ ହୋଇ ବୁଲିବେ। ଯେତେହେଲେ ବାପାଙ୍କର ପିଲାମାନେ ତ! ମିନିର ମଝିଆଁମାମୁଁ ବାହାଘର ସମୟରେ ଭାରି ରାଗୁଥାନ୍ତି। ନନା ବଡ଼ ଥାଉ ଥାଉ ମୋତେ କାହିଁକି ବିଭା କରାଉଛ। ମିନିବୋଉ ଆଉ ମାଉସୀଙ୍କୁ କହନ୍ତି ତୁମେମାନେ ସବୁ ଏକ ହୋଇ ଏ ନାଟ ଲଗାଇଛ। ମିନିର ମାମୁଁଘରେ ମିନିର ସାଙ୍ଗ ଭଉଣୀମାନେ ବହୁତ ଯୁଟି ଗଲେ। ବାସନ୍ତୀ, ସେ ଜଣେ ତା ପଡ଼ୋଶୀ ମାମୁଁଙ୍କ ଝିଅ। ସୁମତି, ପ୍ରତିମା ରମା ମାଉସୀମାନେ, ସାତ ଆଠ ଘର ସାହିର ବହୁତ ଝିଅମାନେ। ମାମୁଁଙ୍କ ବାହାଘର ପାଖେଇ ଆସିଲା। ମିନିର ମାମୁଁ ବାହା ହୋଇଗଲେ। ବହୁତ ବାଣ ଫୁଟାଇ ପଟୁଆର କରି ଗଲେ। ଏତେ ପଟୁଆର କଲେ ଯେ, ଲୋକମାନେ ପଟୁଆର ଦେଖି ଦେଖି କନ୍ୟା ଘର ଗାଁରେ ପହଞ୍ଚିଲେ। କନ୍ୟା ପିତା ଏତେ ଲୋକଙ୍କୁ ବରଯାତ୍ରୀ ଭାବି ଛାନିଆ ହୋଇଗଲେ। ଦୁଇ ହଜାର ଲୋକଙ୍କୁ କୁଆଡୁ ଖାଇବାକୁ ଦେବେ? ବାହାଘର ସରିଲା। କନ୍ୟା ଧରି ମିନି ମାମୁଁଘରକୁ

ଫେରିଲେ। ମିନି ମାଇଁଙ୍କୁ ଭାରି ଭଲ ପାଏ। ମାଇଁ ବେଶ୍ ସହିଷ୍ଣୁ ବୋହୂ। ନ ହେଲେ କ'ଣ ଏପରି ଶାଶୂଙ୍କ ପାଖେ ଚଳିବ? ସାନ ସାନ ଚାରୋଟି ନଣନ୍ଦ। ବଡ଼ନଣନ୍ଦ ଜଣେ, ଦୁଇଟି ଦିଅନ୍ତି। ଏସବୁଁ ଏ ଶାଶୂଙ୍କର। ରନ୍ଧାବଢ଼ା, ଶାଶୁ, ଶ୍ୱଶୁରଙ୍କ ସେବା କରି ଭଲ 'ଚଳେଇ ପାରୁଥିଲେ। ମିନିମାମୁଁତ ଗାଁରେ କରଣ, ଲୋକଙ୍କୁ ଭଲ ଦେଖି ପାରୁଥିଲେ। ସେ ଗାଁ ଲୋକେ କହନ୍ତି ଯେ ଗାଁ କରଣ ଆମର ଭରତ ରାଜ୍ୟ ପାଳିଲା ପରି ଆମକୁ ପାଳୁଛନ୍ତି। ଗାଁ ଲୋକେ ଭାରି ସନ୍ତୁଷ୍ଟ ହୁଅନ୍ତି। ଘରେ ମଧ୍ୟ ଏତେ ଗୁଡ଼ିଏ ଭାଇ ଭଉଣୀଙ୍କୁ ସମ୍ଭାଳି ବସାଘରକୁ ଚାଉଳ ପଠାନ୍ତି। ମିନିର ବଡ଼ମାମୁଁ ବାହାର ଖର୍ଚ୍ଚ ତୁଲାନ୍ତି। କାହାର ଲୁଗା ପଟା ଦରକାର ପଡ଼ିଲା, ବନ୍ଧୁବାନ୍ଧବ ଯିବା ଆସିବା, କୁଣିଆ ମଇତ୍ର ଆସିଲେ ଗଲେ, ଝିଅ ଝିଆରୀଙ୍କୁ ଦବା ନବା ଏ ସବୁ ବୁଝନ୍ତି। ମିନିର ସାନମାମୁଁ କିଛି ଦାୟିତ୍ୱ ବୁଝନ୍ତି ନାହିଁ। ସେ ବେଳେ ବେଳେ ରାଗି ଉଠନ୍ତି, ମୁଁ କାହିଁକି ଏମାନଙ୍କ ପିଛା ପଇସା ଖର୍ଚ୍ଚ କରିବି, କ'ଣ ଲାଭ ଅଛି, ଘର ଭିତରେ ନନା ନାଗସାପ ବଢ଼ୁଛି, ନିଜେ ବାହା ହେଲା ନାହିଁ କି ଆମକୁ କିଛି କଲା ନାହିଁ, ସେ ଭୀଷ୍ମ ହେଲା ବୋଲି ସମସ୍ତେ କ'ଣ ସେଇୟା ହେବେ? ଏପରି କହନ୍ତି ସିନା, କିନ୍ତୁ ସାବତ ଭାଇ ଭଉଣୀଙ୍କ ପାଇଁ ବେଶ୍ ମାୟା ମମତା ଥାଏ। କେବେ କାହା ଆଗରେ କିଛି କହନ୍ତି ନାହିଁ। ନିଜର ବଡ଼ଭଉଣୀମାନଙ୍କ ଆଗରେ ନିଜ ଦୁଃଖ କହନ୍ତି। ମିନି ସାନମାମୁଁଙ୍କୁ ଯେତେବେଳେ ଦୁଇ ବର୍ଷ ତାଙ୍କ ନିଜ ବୋଉ ମରିଗଲେ। ସେହିପରି ତାଙ୍କ ଉପର ଭଉଣୀଙ୍କୁ ଚାରି ବର୍ଷ, ଯେ କି ମିନିର ହେମ ମାଉସୀ। ତାଙ୍କ ଉପର ଭାଇ ଯେ କି ବାହା ହେଲେ ତାଙ୍କୁ ଛଅ ବର୍ଷ। ଯିଏ ମିନିର ବଡ଼ମାମୁଁ ତାଙ୍କୁ ଆଠ ବର୍ଷ ବୟସ। ତାଙ୍କ ଉପରେ ଗୋଟେ ଭାଇ ମରିଥିଲା। ତାଙ୍କ ଉପର ଭଉଣୀ ଯିଏ କି ମିନିର ମାଉସୀ, ବାର ବର୍ଷ ବୟସ। ମିନିବୋଉକୁ ଚଉଦ ବର୍ଷ ବୟସ। ମିନିବୋଉ ଉପର ଭଉଣୀଙ୍କୁ ଷୋହଳ ବର୍ଷ। ସିଏ ବାହା ହୋଇ ଯାଇଥିଲେ। ପ୍ରଥମ ମା'ଙ୍କର ଯୋଉ ଝିଅଟି ଥିଲେ ସିଏ ମଧ୍ୟ ବାହା ହେଇ ଯାଇଥିଲେ। ମିନିର ନିଜ ଆଈ ଯେତେବେଳେ ମରେ ତାଙ୍କୁ ମୋଟେ ବୟାଳିଶ ବର୍ଷ ବା ତେୟାଳିଶ ବର୍ଷ ହୋଇଥାଏ। ସେ ତାଙ୍କ ସ୍ୱାମୀଙ୍କୁ କହିଲେ ଝିଅ ଦୁହିଁଙ୍କୁ ଶାଶୂ ଘରୁ ଡ଼କାଇ ଆଣ, ମୁଁ ଦେଖିବି। ମିନିଅଜା କହିଲେ, କାହିଁକି ଏପରି ବ୍ୟସ୍ତ ହେଉଛ, ଜ୍ୱରଟା ହୋଇଛି ଭଲ ହୋଇ ଯିବନି ଯେ। ଦୁଇଜଣ କବିରାଜ ଲାଗିଥାନ୍ତି। ତଥାପି ମିନି ଆଈ ଜିଦ୍ ଲଗାଇଲେ ଯେ, ନା ମୁଁ ତ ନିଶ୍ଚେ ମରିଯିବି, ଦି ଝିଅଙ୍କୁ ଡ଼କାଇ ଆଣ। ମିନିଅଜା ସେଠୁଁ ଦୁଇ ଝିଅଙ୍କୁ ଡ଼କାଇ ଆଣିଲେ। ଝିଅମାନେ ତାଙ୍କ ବୋଉଙ୍କୁ ଦେଖିଲେ। ସେ ମଧ୍ୟ ଝିଅଙ୍କୁ ଦେଖିଲେ। ଆଉ ଦୁଇ ଝିଅ ତ ବାହା

ହୋଇ ନାହାନ୍ତି । ଘରଯୁକ୍ତା ହୋଇ ଅଛନ୍ତି । ମିନି ବଡ଼ମାଉସୀ ଯିଏ ତାଙ୍କୁ ମଧ୍ୟ ଜ୍ୱର ହୋଇଥିଲା । ସେ ଝିଅଟି ବଞ୍ଚିଗଲେ । ମିନି ବଡ଼ମାଉସୀଙ୍କୁ ଯେତେବେଳେ ତା'ବୋଉ ସହ ଜ୍ୱର ହୋଇଥିଲା, ତାଙ୍କ ବୋଉ ସେହି ଜ୍ୱରରେ ଥାଇ କହୁଥାନ୍ତି ମୋର ବଡ଼ିଲା ଝିଅ ମରିଯିବ, ମୁଁ କିପରି ଦେହ ଧରି ରହିବି । ଯୋଗକୁ ବଡ଼ିଲା ଝିଅ ଭଲ ହେଲା, ମା' ମଲା । ଲୋକ ସବୁ ହା-ହା-କାର କଲେ । କ'ଣ କଲା, କ'ଣ କଲା, ଚନ୍ଦା କୁଢ଼ରେ ନିଆଁ ପାଉଁଶ ପକାଇ ଦେଇ ଗଲା । ସାଇ ପଡ଼ିଶା ଗାଁ ଗଣ୍ଡା ସବୁ ମାଇପେ ମା ଛେଉଣ୍ଡ ଝିଅ ପୁଅଙ୍କୁ ଦେଖି ଆଖିରୁ ଲୁହ ଗଡ଼ାନ୍ତି । ଝିଅମାନଙ୍କୁ ଆଉ କିଛି ଲାଗେ ନାହିଁ । ସେମାନେ ପଥର ହୋଇ ଯାଇଥାନ୍ତି । ସେମାନେ ଭାବନ୍ତି, ଲୋକେ ହେଲେ କାତର, ଆମେ ହେଲୁ ପଥର ।

ମିନିବୋଉ ଯେତେବେଳେ ତାଙ୍କ ନିଜ ବୋଉ କଥା ପକାନ୍ତି କାନ୍ଦନ୍ତି । ମିନିବୋଉ ଉପର ଦୁଇ ଭଉଣୀ ଯେଝା ଶାଶୁ ଘରକୁ ଚାଲିଗଲେ । ମିନିବୋଉ ସେତେବେଳେ ଛୋଟ ଭାଇ ଭଉଣୀଙ୍କ ଦାୟିତ୍ୱ ନେଇ ଘର ଚଳାଇଲେ । ସେତେବେଳେ ନିଜ ଭାଇଟିମାନ ଛୋଟ ଛୋଟ । ଘରକୁ ଅଭାବ ମାଡ଼ି ଆସିଲା । ମିନିଅଜା କେତେକ ଘର ଜମି ଆଦି ବିକ୍ରି କରି ପିଲାଙ୍କୁ ଚଳାଇଲେ ।



ଆଉ ନିଜେ ଅଫିମ ଖାଇ ଢୁଳାଇବାର ଅଭ୍ୟାସକୁତ ରଖିଥାନ୍ତି। ବଡ଼ ଝିଅ ଦୁହେଁ ଅଭିଆଡ୍ରୀ, ତଥାପି ଆଉ ଥରେ ବୁଢ଼ା ବାହା ହେଲେ। ବ୍ରାହ୍ମଣ ପୁରୋହିତ କହିଲେ, ତୁମେ ବାହା ହୁଅ। ତୁମେତ ତୁମ ବାପା ମାଙ୍କର ଗୋଟିଏ ପୁଅ, ତୁମ ବାପା ମାଙ୍କୁ ପିଣ୍ଡ ଶ୍ରାଦ୍ଧ କରିବ କିଏ। ମିନିଅଛା ତୃତୀୟ ଥର ବାହା ହେଲେ ବାଧ୍ୟରେ। ବାହା ହେଲା ପରେ ପଚାଶ ବର୍ଷ ବୟସରେ, ନିଜର ପିଲାମାନଙ୍କୁ ସ୍ନେହ ମମତାରୁ ଟିକେ ଦୂରେଇଲେ। ଝିଅମାନଙ୍କୁ ବାଧିଲା, ଖୁଡ଼ୀମାନଙ୍କ ପାଖକୁ ବେଶି ପାଖେଇ ଆସିଲେ। ନିଜ ଭାଇ ଭଉଣୀ ବାପା, ବୋଉଙ୍କର କାମ ଦାମ ଦୁଇ ଝିଅ ତୁଲାଇ ଦିଅନ୍ତି। ହେଲେ ବାପାଙ୍କୁ ଯେତେ ନ ଡ଼ରିଲେ ବୋଉଙ୍କୁ ବେଶି ଡ଼ରି ଡ଼ରି ଚଳିଲେ। ମିନିବୋଉ ଷୋହଳ ବରଷର ଝିଅ। ତାଙ୍କ ସାବତ ବୋଉ ତାଙ୍କ ଠାରୁ ବର୍ଷେ ସାନ ବୟସରେ। ସେ ତାଙ୍କର ବୋଉ ହେଲେ ମଧ୍ୟ ସେ ତାଙ୍କୁ ସାନ ଭଉଣୀ ପରି ଦେଖୁଥିଲେ। ନିଜେ ମିନିବୋଉ ରନ୍ଧାବଢ଼ା କରି ସାନ ସାନ ଭାଇ ଭଉଣୀଙ୍କୁ ବାପାଙ୍କୁ ଖାଇବା ପିଇବାକୁ ଦେଇ କାମ ତୁଲାଇ ଦେଉଥିଲେ। ବୋଉ ତାଙ୍କର ସଞ୍ଜ ହେଲେ ଶୋଇବେ। ଉଠେଇ କରି ଖାଇବାକୁ ଦେଲେ ଖାଇବେ। କିଛି କାମ ଦାମ କରିବେ ନାହିଁ। ମିନିବୋଉଙ୍କ ତଳ ଭଉଣୀ ଏ'ସବୁ ବ୍ୟବହାର ମା'ର ଦେଖି ସହିପାରନ୍ତି ନାହିଁ। ଅପାଙ୍କୁ କହନ୍ତି ତୁ ତ ସବୁ କାମ କଲୁ, ମୁଁ ନଈରୁ ପାଣି ବୋହିବି, ବାସନକୁସନ ମାଜିବି, ଘରଦୁଆର ଲିପାପୋଛା କରିବି, ସିଏ ଆମର ମା ହୋଇ ଆସିଲା ଯେ ଆମ କଥା କିଛି ବୁଝିଲା ନାହିଁ, ବୋଉ ଆମର ମରିଗଲା ଆମକୁ ଯେତେ ବାଧି ନଥିଲା, ଯାର ଏ ବ୍ୟବହାର ବେଶି ବାଧୁଛି। ବାପାଙ୍କ କାନକୁ ଏକଥା ତ ଯାଏ ନାହିଁ। ଖୁଡ଼ୀମାନେ ଜାଣନ୍ତି। ପଛରେ ଫୁସୁରୁ ଫାସର ହୁଅନ୍ତି। ଦେଢ଼ଶୁରଙ୍କ ଉପରେ ମନେ ମନେ ରାଗି ଉଠନ୍ତି। ଝିଅମାନଙ୍କୁ ଆପଣାର କରି ନିଅନ୍ତି। ହେଲେ କିଛି କରିପାରିବାର ଉପାୟ ନାହିଁ। ସମସ୍ତେ ଭିନ୍ନ ହେଲେ ମଧ୍ୟ ଆଠ ଦଶ ଘର ସାଇଟା ନିଜ ନିଜ ଭିତରେ ଭଲ ସ୍ନେହ ମମତାର ସମ୍ପର୍କ ଥାଏ।

ଦିନକର ଘଟଣା। ମିନିବୋଉ ସଞ୍ଜ ପୂର୍ବରୁ ରୋଷେଇ ସାରି ଭାଇ ଭଉଣୀଙ୍କୁ ଖାଇବାକୁ ଦେଇ ସାରି ବାପାଙ୍କୁ ଅପେକ୍ଷା କରି ଥାଆନ୍ତି। ବାପା ଅନ୍ୟ ଏକ ଗାଁକୁ ଯାଇଥାନ୍ତି। ଫେରୁ ଫେରୁ ଟିକେ ଡ଼େରି ହେବ। ଅନ୍ଧାର ରାତି। ମିନିବୋଉଙ୍କ ଉପର ଭଉଣୀ ଶାଶୁଘରୁ ଆସିଥାଆନ୍ତି। ତାଙ୍କ ବୋଉ ସେମିତି ସଞ୍ଜ ବେଳକୁ ଶୋଇ ପଡ଼ିଥାନ୍ତି। ସେ ବୋଉକୁ ଆସି ଉଠାଇଲେ। ହଇଲୋ ରାଜା ଘର ଝିଅ, କେତେ ଶୋଉଛୁ ବା, ଏଥର ଉଠୁ। ବାଣୀତ ରନ୍ଧାବଢ଼ା ସାରି ପିଲାମାନଙ୍କୁ ଖାଇବାକୁ ଦେଇ ସାରିଲାଣି। ବାପା ଆସି

ନାହାନ୍ତି, କେତେ ବେଳେ ଆସିବେ। ଅନ୍ଧାର ରାତି। ଉଠୁ ବୋଉ ଖିଆ ପିଆ କରିବା। ଯା ଶୁଣି ବୋଉ ଏକ୍‌ଦମ୍ ରାଗି ଉଠିଲେ। କହିଲେ ତୁ କିଏ ଲୋ ମତେ ରାଣ୍ଡ ଘର ଝିଅ କହୁଛୁ? ଏମିତି କେତେ କ'ଣ ଗାଳି ଦେଲେ। ମିନିବୋଉଙ୍କର ବଡ଼ ଭାଉଣୀ କାନ୍ଦି କାନ୍ଦି ନ ଖାଇ ନ ପିଇ ଶୋଇଲେ, ବାପା ଆସିଲେ କହିବି। ମା ମାଡ଼ଗୋଳ କରିସାରି ବେଶ୍ ପେଟେ ଠୁଙ୍କି ଦେଇ ଶୋଇ ଗଲେ। ବାପା ତା ପରଦିନ ସକାଳୁ ଆସିଲେ। ମା ଝିଅ ଦୁହେଁ ଗୁହାରି କଲେ। ବାପା ସବୁ ଶୁଣି ସାରି କହିଲେ, ହଁ ଲୋ ତୁ ଘରୁ ପଳେଇବୁ ନାଁ ସେ ଘରୁ ପଳେଇବ ଲୋ? ଏମିତି କାହିଁକି ହଉଛ? ମିନିଅଜା କାହାକୁ କିଛି କହନ୍ତି ନାହିଁ। ଭାରି ଧୀରସ୍ଥିର ଶାନ୍ତଶିଷ୍ଟ ଲୋକ। କଥା କହିଲେ ଏ କାନରୁ ସେ କାନକୁ ଶୁଭିବ ନାହିଁ।

ମିନିଅଜାଙ୍କର ମୁଣ୍ଡରେ ବାଳ ଗଣ୍ଡିଟିଏ ଥିଲା। ମୁଣ୍ଡର ଆଗ ପାଖରୁ ବାଳ ଚନ୍ଦା ହୋଇଥାଏ। ପଛ ପଟରୁ ବାଳ ପିଠିକୁ ଲମ୍ବିଥାଏ। ନିତି ଗାଧେଇ ଆସି ବାଳ ପୋଛନ୍ତି। ଗାମୁଛାରେ ବାଳକୁ ଝାଡ଼ନ୍ତି। ପତଳା ମଣିଷ, ଗୋଟିଏ ହେଲେ ଦାନ୍ତ ନଥିଲା। ପାକୁଆ ପାଟି, ପିଠିରେ କୁଜ। ଅଣ୍ଟା ଆଗକୁ ଠେଲି ହୋଇଥାଏ। ଲମ୍ବା ମଣିଷ, ଗୋରା ନୁହଁନ୍ତି, ମଧୁର ରଙ୍ଗ। ହାତରେ ସଦାବେଳେ ବାଙ୍କି ବାଡ଼ି ଥାଏ। ଗାମୁଛାଟିଏ ପିନ୍ଧିଥାନ୍ତି। ଗାମୁଛାଟିଏ କାନ୍ଧରେ ଥାଏ। ବେଳେବେଳେ ଧୋତି ପିନ୍ଧନ୍ତି। ପୁଅମାନେ ପାରିଗଲାଠୁଁ ଅଭାବ ନଥିଲା। ଅଫିମ ଖିଆ ପ୍ରଧାନ ଥିଲା। ନାସ ମଧ୍ୟ ଶୁଙ୍ଘୁଥିଲେ। ସବୁବେଳେ ସକାଳେ ଚା' ଖାଆନ୍ତି। ଡ଼ାକରେ ଡ଼ାକେ ଚା'। ଛୋଟ ଝିଅ ତିନୋଟିକୁ ଧରି ବସି ଚା' ଖାଇବେ। ତା'ସାଙ୍ଗକୁ ଦୋଭଜା ବା ଉଖୁଡ଼ା କି ଲିଆ। ଆଲୋ ସବିତା କବିତା, ଏ ସୁନା ଡ଼ାକି ଚା' ଖିଆ ଚାଲିବ। ମିନିର ମଝିଆଁ ମାମୁଁ ମିନିଅଜାଙ୍କ ପାଇଁ ଚା' ପାଇଁ କ୍ଷୀର ଖଞ୍ଜା କରି ଦେଇଥାନ୍ତି। ଘରେ ତାଙ୍କର ଗାଈ ନଥାଏ। ପୁଅ କହନ୍ତି ବାପା ଭଲ କରି ଚା' ଟିକେ ତୁମେ ଖାଅ। ଏ ପିଲାଙ୍କୁ କାହିଁକି ଦଉଚ? ସେମାନେ ସକାଳୁ ପଖାଳ ଖାଉଛନ୍ତି। ଆଉ ସବୁ ରକମର ଖାଦ୍ୟ ଖାଉଛନ୍ତି। ମିନିଅଜାଙ୍କର ମନ ମାନେ ନାହିଁ। ସେ ଡ଼ାକେ ଚା' କରନ୍ତି। ପିଲାଙ୍କୁ ଖୁଆନ୍ତି। ନିଜେ ଖାଆନ୍ତି। ମିନିମାମୁଁ କହିକହି ଥୋବରା ହୁଅନ୍ତି। ସେ ଶୁଣନ୍ତି ନାହିଁ। ମିନି ଆଈକୁ କରଣ ସାଇର ସମସ୍ତେ ବହୁତ ଡ଼ରନ୍ତି। ପଛରେ କିନ୍ତୁ ଫୁଟୁରୁ ଫାଟର ହୁଅନ୍ତି। ଯାଆମାନେ, ପୁତୁରା ବୋହୂମାନେ ଦିଅରମାନେ। ମିନି ଆଈକୁ ଯେତେବେଳେ ଷୋହଳ ବରଷ ତାଙ୍କ ଦିଅରମାନଙ୍କୁ କାହାକୁ ପଚାଶ ବର୍ଷତ, କାହାକୁ ପଇଁଚାଳିଶ ବର୍ଷ। ଦୁଷ୍ଟ ଲୋକଙ୍କୁ ସମସ୍ତଙ୍କର ଡ଼ର। ତେଣୁ ଦିଅର ମଧ୍ୟ ଡ଼ରନ୍ତି। ଆଗରେ କଅଁଳେଇ ସଅଁଳେଇ କଥା କହି ଦିଅନ୍ତି। ଯା'ମାନେ ନୂଆଅପା

ନୂଆଥପା କହି ପାଣି ପିଉଛି ନାହିଁ। ପଛରେ ନାନା କଥା କହି ଛିଗୁଲାନ୍ତି। ଛିଆମ ବୁଢ଼ା କାଳକୁ ଆସି କ'ଣ ହଉଛି ଲୋ ମା !

—୮—

ମିନି ମାମୁଁଘର ଗାଁରେ ବାରିପଟେ ନଈ। ଦୁଇ କରେ ବିଲ ମଝିରେ ନଈଯିବା ଆସିବା ବାଟ। ଭୋରୁ ଉଠି ଛୁଆ ପିଲା, ବୁଢ଼ା ବୁଢ଼ୀ, ପୁଅ ବୋହୂ, ଯୁବତୀ ଚାଲିଥାନ୍ତି। ଗାଧୁଆ ପାଧୁଆ ଦାନ୍ତ ଘଷା ପୋଖରୀ ପାଣି ସବୁ ନଈରେ ବଢ଼େ। ସାଙ୍ଗ ମାଉସୀ ଭଉଣୀ ଆଈମାନେ ନଈକୁ ଯାଆନ୍ତି। ଗଛ ପତ୍ର ଫୁଲ ଫଳ ନଈର ସୁନ୍ଦର ଦୃଶ୍ୟ ବଢ଼ାନ୍ତି। ସକାଳୁ ଦାନ୍ତ କାଠି ଭାଙ୍ଗନ୍ତି। ଦାନ୍ତ ଘଷନ୍ତି। କିଏ ନିମ୍ବ ଦାନ୍ତକାଠି ଘଷେ ତ, କିଏ ସାହାଡ଼ା, କିଏ ମୁତୁରୀ। ସବୁ ପ୍ରକାର ଦାନ୍ତ କାଠି ନଦୀ କୂଳରେ ଥିବା ଛୋଟ ପଡ଼ିଆରୁ ମିଳେ। ଗାଧୁଆସାରି ଓଦାଲୁଗାରେ ଘରକୁ ଫେରନ୍ତି। ମିନି ନଦୀକୁ ଗାଧୋଇ ଯାଏ। ସାଙ୍ଗ ମେଳରେ ଭାରି ଭଲ ଲାଗେ ମିନିକୁ।



ନଦୀର ବାଲିରେ ଚୁଆଁ ଖୋଳନ୍ତି। ମାଠିଆରେ ପାଣି ଘରକୁ ଆଣନ୍ତି। ବାଲି ଗୋଟେ ପଟେ, ଆଉ ଗୋଟେ ପଟେ ଚାଙ୍ଗରା ପଥର ବାହାରିଥାଏ। ବଡ଼ ବଡ଼ ପଥର। ଗୋଟେ ଗୋଟେ ଚାଳିଶ ହାତ ଲମ୍ବା କୋଡ଼ିଏ ହାତ ଓସାର ଥାଏ। ସେହି ପଥର ଉପରେ ବସି ପାଇଖାନା ଆରମ୍ଭ କରିଥାନ୍ତି। ସେ ସବୁ ଖରାରେ ଶୁଖି ନଦୀକୁ ଗଲେ ଉତ୍କଟ ଗନ୍ଧ ବାହାରୁଥାଏ। ଯେତେବେଳେ ନଦୀରେ ବଢ଼ି ଆସେ ସବୁ ଧୋଇ ହୋଇ ଯାଏ। ଏହିପରି ଦିନ ଚାଲିଥାଏ। ଜହ୍ନରାତିରେ ତୋଫା ଜହ୍ନ ପଡ଼ି ନଦୀର ପରିଷ୍କାର ପାଣି ସୁନ୍ଦର ଦେଖାଯାଏ।

ଛନ୍ନ ରାତିରେ ବେଳେବେଳେ ଲୋକେ ନଦୀକୁ ଯାଆନ୍ତି। ସଞ୍ଜ ପୂର୍ବରୁ ପ୍ରାୟ ସମସ୍ତେ ନଦୀରୁ କାମ ଶେଷ କରିଥାନ୍ତି। ଯୁବତୀ ଝିଅମାନେ କାଳେ ଭୂତ ଡ଼ାହାଣୀ, ପିଶାଚୁଣୀକୁ ଡ଼ରିବେ ବୋଲି ରାତିରେ ନଈକୁ ଯିବାକୁ ଜେଜେମାମାନେ ମନା କରନ୍ତି। ରାତ୍ରିରେ ଡ଼ାହାଣୀ ଚରିବାକୁ ଯାଏ ବୋଲି ଆଇମାନେ କଥା ବାର୍ତ୍ତା ହୁଅନ୍ତି। ଡ଼ିବି ଜଳେ। ଲଣ୍ଠନ ଆଲୁଅ ବେଶି ନଥାଏ। ସଞ୍ଜୁଆ ପହରୁ ସବୁରି ଘରେ ଖିଆପିଆ ହୋଇଥାଏ। ରାତିରେ ବସି ହଳଦୀ ଲଗାନ୍ତି। କିଏ ଗପସପ ହୁଅନ୍ତି। କିଏ ଗପ ଆରମ୍ଭ କରେ।

ସାଇର ସମସ୍ତେ କଥା ହୁଅନ୍ତି ଯେ, ଘୁ'ଖାଇ ଡ଼ାହାଣୀ ଆସି ରାତିରେ କାଳେ ଗୁହ ଚରେ। ଗୋଡ଼ ଦୁଇଟା ଉପରକୁ କରିଥାଏ। ହାତ ଦୁଇଟାରେ ଚାଲେ। ଯେତେବେଳେ ରାତିରେ ସମସ୍ତେ ଶୋଇ ଯାଆନ୍ତି, ଡ଼ାହାଣୀ ଗୁହ ଚରି ବାହାରେ।

ମିନିମାମୁଁଘରେ କେତେ ଦିନରହି, ନଈ ଗାଧୁଆ, ପଖାଳ ଖିଆ ଦେହରେ ଭଲ ଚ଼କିଗଲା। ସେ ମଧ୍ୟ ସାଙ୍ଗ-ସାଥୀଙ୍କ ମେଳରେ ନଈରୁ ମାଠିଆରେ ଘରକୁ ପାଣି ଆଣିଲା। ନଈରୁ ପାଣି ଆଣିବାକୁ ଭଲ ପାଏ। ମିନିକୁ ତା ମାଇଁ କହନ୍ତି—ଏ ମା ଏତେ ପାଣି ତମେ କାହିଁକି ବୋହୁଛ? ତମର ଏ ଅଭ୍ୟାସ ନାହିଁ। ତମ ଗୋଡ଼ ଘୋଳେଇ ହେବ। ମିନି କିନ୍ତୁ ମାନେ ନାହିଁ। ତାକୁ ତ ପାଣି ଆଣିବାକୁ ଭଲ ଲାଗେ। ଆଉ ମଧ୍ୟ ଆଇ ଖୁସି ହେବେ। ମିନିଅଜା ମିନିକୁ ଭାରି ଭଲ ପାଆନ୍ତି। ମିନି ସାଇର ସାଙ୍ଗ ସାଥୀଙ୍କ ମେଳକୁ ଯେତେ ଯାଏ ମିନିଅଜା ଡ଼ାକ ପକାନ୍ତି, ହଇଲୋ ଏ ମିନି, ଘରକୁ ଆସେ। ଘରେ ନ ରହି କାହିଁକି କୁଆଡ଼େ ଯାଉଛୁ ଲୋ। ମିନିର ସାଙ୍ଗମାନେ କହନ୍ତି ବୁଢ଼ା ତୋତେ ଡ଼ାକ ଛାଡ଼ିଲାଣି ଲୋ, ଯା ଦଉଡ଼। ମିନି ସେଠୁଁ ଦଉଡ଼ି ଘରକୁ ଆସେ। ବେଳେବେଳେ ଖରାବେଳେ ଶୋଇପଡ଼େ। ମିନି ତା ମାମୁଁଘରେ ମାସେ ଖଣ୍ଡେ ରହିଲା। ତା'ପରେ ପୋଲସରା ବସାଘରକୁ ତା ବୋଉ ଡ଼କାଇନେଇ ଚାଲିଗଲା। ମାମୁଁଘରୁ ଯିବା ପୂର୍ବରୁ ସାଙ୍ଗ ଭଉଣୀମାନେ ଛାଡ଼ିବାକୁ ରାଜି ହେଉ ନଥିଲେ। ମିନି କିନ୍ତୁ ବୋଉ ପାଖକୁ ଗଲା।

ଅଶିଣ ମାସରେ ଛନ୍ନିଓଷା ହୁଏ। ମାମୁଁଘର ଗାଁର ସବୁ ଝିଅମାନେ କରନ୍ତି। ମିନି ଥରେ ଛନ୍ନିଓଷା କରିଥିଲା। ବଡ଼ ଏକ ଅଗଣାରେ ଚଉରା ଭଲକରି ନୂଆ ହେଇ ପଡ଼ିବ। ସଞ୍ଜ ପୂର୍ବରୁ ଲିପା ପୋଛା ହେବ। ଛନ୍ନି ଗଛ ଫୁଲ ଫୁଟିଥାଏ। କିଏ ଚଉରା ଲିପିଲା, କିଏ ଫୁଲ ତୋଳିଲା, କିଏ ଦୀପ ଧୂପ ସଜାଡ଼ିଲା। ଶୀଘ୍ର ଶୀଘ୍ର ଘର କାମ ସାରି ନିତି ସଞ୍ଜ ବେଳେ ପୂଜା ପାଇଁ ପ୍ରସ୍ତୁତ ହୁଅନ୍ତି। ନଈରୁ ପାଣି ଆଣିବା, ଘର ଦୁଆର ଓଳାଇବା,

କିଏ ବଡ଼ଝିଅମାନେ ରୋଷେଇ କାମ ସାରି ମଧ ନଈକୁ ଯାଇ କାମଦାମ ସାରି ଆସନ୍ତି। ମାସଯାକ ଆଇଁଷ ଖାଆନ୍ତି ନାହିଁ, ଯୋଉମାନେ ଓଷା କରନ୍ତି। ଅଗଣାରେ ସମସ୍ତେ ଏକାଠି ହୁଅନ୍ତି ଡ଼କା ଡ଼କି ହୋଇ। ଚଉରାରେ ଜହ୍ନିଫୁଲ ମଣ୍ଡି ଦେଇଥାନ୍ତି। ଅଣିଣ କାକର୍ ପଡ଼ି ଆସୁଥାଏ। କୁମାରୀମାନେ ମହା ଆନନ୍ଦରେ ପୂଜାରେ ମାତିଥାନ୍ତି, "ଜହ୍ନିଫୁଲ ଠୋ ଠା, ବେଙ୍ଗ ନାନୀ କହି ଯାଇଛି ଚାଉଳ ମୁଠେ ଦେଇ ଯା।" ପ୍ରତିଦିନ ପୂଜା ଶେଷ ହେଉ ହେଉ ରାତି ଆଠଟାରୁ ବେଶି ହୋଇଯାଏ। ପ୍ରତି ଘର ପୁରୁଷମାନେ ଖିଆପିଆ କରି ସାରିଥାନ୍ତି। ଆଉ ମାଇପେ ଝିଅମାନଙ୍କର ପୂଜା ଶେଷ ପର୍ଯ୍ୟନ୍ତ ଅନାଇଁ ବସିଥାଅନ୍ତି। ଜହ୍ନିଓଷା ଗୀତ ବହିଟି ନିତି ଶେଷ କରି ସାରିଲେ ଯାଇ ପୂଜା ହୁଏ।



ଆହୁରି ଗୀତ ଗାଆନ୍ତି, "ଜହ୍ନି, ଜହ୍ନି, ଜହ୍ନି ଆଞ୍ଜୁଳି, ନିତି ପୂଜା କଲି ତିନି ଆଞ୍ଜୁଳି। କାଖେ ପୁଅ, ପଣନ୍ତେ ଝିଅ, ଜିଇଁଥିଲା ଯାକ ଅହ୍ୟ ରାଣୀ ହୁଅ। ମଲେ ବୈକୁଣ୍ଠ ପୁରେ ଯାଅ।" ଖଇ, ଉଖୁଡ଼ା, ରାଶିଲଡୁ ଜହ୍ନିଓଷାରେ ପୂଜା ହୁଏ। ଚାଙ୍ଗୁଡ଼ିମାନଙ୍କରେ ପୂଜା ସରଞ୍ଜାମ ଯୋଗାଡ଼ ହୁଏ। ଜହ୍ନିଓଷା ପୂଜା ସରିଲା ପରେ ଝିଅମାନେ ସବୁ ରାମ ସୀତାଙ୍କ ଜୁଅଖେଳ ଗୀତ ଗାଆନ୍ତି।

ସୁବର୍ଣ୍ଣ ମଣ୍ଡପ ମଧ୍ୟରେ ରତ୍ନ ପିଢ଼ା ପକାଇ
ଗଙ୍ଗା ନଦୀରେ ପାଦ ପଖାଳି ରାମ ବସିଲେ ଯାଇ ।
ସୁବର୍ଣ୍ଣ ଖରଡ଼ ପାରିଣ ବାଜୀ ଜାନକୀ ଆଗେ
ଜୁଆ ଖେଳିବାକୁ ବସିଲେ ରାମ ଜାନକୀ ସଙ୍ଗେ ।
ଶ୍ରୀରାମ ଧଇଲେ କଉଡ଼ି ମୁଠି ଫେଡ଼େ ମୈଥିଳୀ
ବୋଲନ୍ତି ସହାସ୍ୟେ ଶ୍ରୀରାମ ରାଜ୍ୟଯାକ ହାରିଲି ।
ଜାନକୀଙ୍କୁ ମୁଠି କଉଡ଼ି ଯାକ ଧରାନ୍ତି ବାଳୀ
କାଣି ଆଙ୍ଗୁଠିରେ ଫିଟାଅ ବେଗେ କୋଦଣ୍ଡଧାରୀ ।
ଫେଡ଼ି ନ ପାରି ଦାଶରଥି ମଥା ପୋତି ରହିଲେ
ସତ୍ୟ ମୁଁ କଲି ଶତେବାର ମାଗ ଯାହା ବୋଇଲେ ।
ଦାସୀଏ ବୋଇଲେ ଜାନକୀ ବିନୁ ଆନ ନୋହିବ
ସପତଣୀ ବିଭା ନୋହିବ ମାଗୁଅଛୁ ରାଘବ ।

ଆଉ ଗୋଟିଏ ଗୀତ ମଧ୍ୟ ଗାଆନ୍ତି

ଶୁଣ ହେ ସୁଜନ ଜନ ଦେଇ ମନ କର୍ଣ୍ଣ
ଶ୍ରୀରାମ ସୀତାଙ୍କ ଜୁଆ ଖେଳର ବିଧାନ ।
ସୁବର୍ଣ୍ଣ ବେଦିକାରେ ଚନ୍ଦନ କୋଠି କାଟି
କି ଅବା କହିବା ସେ ଆସନ ପରିପାଟୀ ।
ସୁବର୍ଣ୍ଣ ଖରଡ଼ ପରେ ସୁବର୍ଣ୍ଣ ମୁରୁଜି
ଚଉପାଶେ ମାଣିକ୍ୟର ଦୀପାବଳୀ ଜାଳି ।
ଶ୍ରୀରାମ ବିଜୟ କଲେ ଆନନ୍ଦିତ ମନେ
ସୀତାଙ୍କୁ ବେଢ଼ି ବସିଲେ ସହଚରୀ ଗଣେ ।
ପରସ୍ପରେ ଜୁଆ ଖେଳନ୍ତି କଉଡ଼ି ତୋଳି
ଦାସୀ ଗଣେ ମିଳିଣ ଦିଅନ୍ତି ହୁଳହୁଳି ।
ଶ୍ରୀରାମ ପକାନ୍ତି ଜୁଆ ମୁଦି ପଣ କରି
ସେ ପଣକୁ ଜିତିଲେ ଯେ, ଜନକ କୁମାରୀ ।
ଦ୍ୱିତୀୟ ମୁଠି ପକାଇ ରାଜୀବଲୋଚନ
ଆପଣାର ରତ୍ନଖଡୁ ରଖିଲେ କରି ପଣ ।
ହାରିଲେ ଆପଣା ଖଡୁ ଶ୍ରୀ କୋଦଣ୍ଡଧାରୀ
ହୁଳ ହୁଳି ଶବଦରେ ଉଛୁଳଇ ପୁରୀ ।
ତୃତୀୟ ମୁଠି କଉଡ଼ି ଶ୍ରୀରାମ ପକାଇ
ସେ ମୁଠିକି ଜୟ କରି ନେଲେ ବଇଦେହୀ ।

ପୂଜା ଶେଷରେ ଠିଆ ହୋଇ ଏ ଗୀତଟି ଗାଆନ୍ତି। ସମସ୍ତେ ମିଶି ଗାଇଲେ ସୁନ୍ଦର ଶୁଭେ। ଏହିପରି ଗୀତ ଗାଇ ପୂଜା କରନ୍ତି। ଅଶିଣ ମାସର ତୋଫା ଜହ୍ନ ଆଲୁଅ ବିଛାଡ଼ି ହୋଇ ପଡ଼ିଥାଏ। କୁମାରୀମାନେ ଖିଆପିଆ ସାରି ସେହି ଜହ୍ନ ଆଲୁଅରେ ଅଗଣାରେ ଚାଲବୁଲ, କଥା ଭାଷା, ଥଟ୍ଟା ତାମସା ହୋଇ ଶୁଅନ୍ତି। ନଈ ଯେତେବେଳେ ବଢ଼ିଥାଏ ଘୁ ଘୁ ଗର୍ଜନରେ କାନ ଅତଡ଼ା ପକାଇଦିଏ। ସକାଳୁ ଉଠି ନଈକୁ ନଯାଇ କୂଅମୂଳେ କାମ ସାରନ୍ତି। ନଦୀର ପାଣି ଖାଲି ଗୋଳିଆ ଲାଲ୍ ଲାଲ୍ ହୋଇଥାଏ। ନଈବଢ଼ି ଦେଖିବାକୁ ଯାଆନ୍ତି। ମିନିର ଜଣେ ଆଈ କହନ୍ତି "କୂଳବୋହୂ କି କାଳିଆ? ନଈପାଣି କି ଗୋଳିଆ?" ସେ ନଈରେ ଗାଧୋଇ ଆସନ୍ତି। ଧୀରେ ଧୀରେ ନଈର ଗୋଳିଆ କମି ଆସେ। ପୁଣି ନଈରେ ସମସ୍ତେ ଗାଧୁଅନ୍ତି।

— ୯ —

ମିନି ଉପରେ ଗୋଟେ ଭାଇ ଜନ୍ମହୋଇ ମରି ଯାଇଥିଲା। ମିନି ଜନ୍ମ ହୋଇ ନଥିଲା। ତା'ବୋଉ ସ୍ୱପ୍ନ ଦେଖିଲେ ଯେ, ଗୋଟିଏ ବୁଢ଼ୀ ଆସି ଦାଣ୍ଡଦୁଆରେ ବସିଛି। ଭିକ ମାଗୁଛି। ମିନିବୋଉ ଚାଉଳ ନେଇ ଗଲେ। ତା ଚାଙ୍ଗୁଡ଼ିରେ ଚାଉଳ ଦେଲେ। ତା ଚାଙ୍ଗୁଡ଼ି ପୂରାପୂରି ଭର୍ତ୍ତି ହୋଇଗଲା। ସେ ବୁଢ଼ୀଟି କହିଲା ଝିଅଟିଏ ଜନ୍ମ ହେବ ଯେ ଜିଇଁବ। ମିନିବୋଉଙ୍କର ଆଗରୁ ମନ ଦୁଃଖ ହୋଇଥାଏ। ପୁଅଟିଏ ହେଲା ଯେ, ମଲା। ଆଉ ନ ହେଉ ପଛକେ ପିଲାପିଲି। ତାଙ୍କୁ ଆଉ ଏତେ ଦୁଃଖ ନ ହେଉ। ସେ ବୁଢ଼ୀକୁ ସ୍ୱପ୍ନ ଦେଖି ବିଶ୍ୱାସ ହେଲା ଯେ, ଝିଅ ହେବ ଆଉ ମରିବ ନାହିଁ। ମିନି ଜନ୍ମ ହେଲା ବେଳକୁ ମିନିର ବାପା ଦିଲ୍ଲୀରେ ଥିଲେ। ମିନିର ବଡ଼ବାପା ମିନିର ନାମ ଦେଇଥିଲେ, ଆଉ ମିନିବାପାଙ୍କୁ ଚିଠି ଲେଖିଥିଲେ ଯେ, ତୁମର ଝିଅଟିଏ ହୋଇଛି। ମିନିର ବାପାଙ୍କୁ ମିନିର ବଡ଼ବାପା କେବେ ହେଲେ ତୁ ତା କରୁ ନଥାନ୍ତି, ତମେ କହୁଥାନ୍ତି। ମିନିବାପା ଚିଠି ପାଇ ସାଙ୍ଗେ ସାଙ୍ଗେ ଦିଲ୍ଲୀରୁ ଗାଁକୁ ଫେରିଆସିଲେ। କୋଉଠି ଲୁଗା ଧୋବା ଘରେ ପଡ଼ିଛିତ, କେଉଁଠି ଟିଫିନ୍ କ୍ୟାରିୟର୍। ଅନ୍ୟାନ୍ୟ କେତେକ ଜିନିଷ ଛାଡ଼ି ଆସିଲେ। ଆସିଲା ବେଳକୁ ମିନିକୁ ତେର ଦିନ ହେଲାଣି। ସେ ରାତିରେ ଘରେ ପହଞ୍ଚିଲେ। ତେରଦିନ ବୋଲି ରାତିରେ ନ ଦେଖି ସକାଳୁ ଆସି ଦେଖିଲେ। କହିଲେ, ଜିଇଁଥାଉ ବାର ବର୍ଷ ହେଲେ ରଘୁନାଥଙ୍କ ଠାରେ କାନ, ନାକ ଫୋଡ଼ାଇବା। ମିନି ଜନ୍ମ ବେଳକୁ ମିନି ବାପାଙ୍କୁ ଚାଳିଶ ବର୍ଷ ହେଲାଣି। ମିନିର ବଡ଼ବାପା, ବଡ଼ମାଙ୍କ ଝିଅ, ଭଉଣୀମାନେ,

ଢେଙ୍କେମା ମିନିକୁ ବହୁତ ଗେହ୍ଲା କରିଥାନ୍ତି। ମିନି ଏ ସବୁ ତା ବୋଉ ପାଖରୁ ଶୁଣିଥିଲା।

ଯା ଭିତରେ ଏତେ ଗୁଡ଼ିଏ ଦିନ ଅତୀତ ହେଲାଣି। ମିନିକୁ କେତେଦିନୁ ବାର ବର୍ଷ ପୂରି ସାରିଲାଣି। ମିନିର ବୋଉ କେବେ ଯିବା, କେବେ ଯିବା ରଘୁନାଥଙ୍କ ପାଖକୁ ହେଉଥାନ୍ତି। ମିନି ତ ସେତେବେଳେ ମାମୁଁଘରେ ରହିଲାଣି। ମିନିମାମୁଁଘରକୁ ମଧ ରଘୁନାଥଙ୍କ ଓଡ଼ଗାଁ ପାଖ ହୁଏ। ମାମୁଁମାନେ ମାଉସୀମାନେ ମିନିର ଭାଇ ଭଉଣୀ ବାପା ବୋଉ ଯିବାକୁ ବାହାରିଲେ। ଗୋଟେ ବସ୍ ଠିକ୍ ହେଲା। ମିନିମାଉସୀ ପରିବା ପତ୍ର, ଡ଼ାଲି, ଚାଉଳ, ପୂଜାରୀ, ମସଲା, ହଳଦୀଗୁଣ୍ଡ, ଲୁଣ, ତେଲ, ରାନ୍ଧଣା ସାମଗ୍ରୀ ଯୋଗାଡ଼ି ଧଇଲେ। ବସ୍‌ରେ ବସି ଓଡ଼ଗାଁ ଗଲେ। ରାତି ନଅଟାରୁ ବସିଲେ ଯେ, ସକାଳ ଭୋରୁ ଓଡ଼ଗାଁରେ ପହଞ୍ଚିଲେ। ସେଠାରେ ଗୋଟେ ଡ଼ାକ ବଙ୍ଗଳାରେ ରହିଲେ। ପୂଜାରୀ ରୋଷେଇ ବାସ କଲେ। ଭାତ ଡ଼ାଲି ତରକାରି ବିଲାତି ବାଇଗଣ ଖଟା। ରାଗ ମସଲା ବହୁତ ପକାଇଥିଲେ। ପିଲାଏ ଖାଇବାକୁ ଭଲ ପାଇଲେ ନାହିଁ। ରାଗ ସିନା, ସ୍ୱାଦ ଲାଗୁଥାଏ। ଖରାଦିନ, ରାଗ ଖାଇ ପେଟ କାଟି ହେଉଥାଏ। ସକାଳେ ଗୋଟେ ପୋଖରୀରେ ଗାଧୁଆ ପାଧୁଆ କରିସାରି ଠାକୁର ମନ୍ଦିର ଗଲେ। ସେଠାରେ ନଅଟା ବେଳେ ମିନିର କାନ ଫୋଡ଼ା ହେଲା। ତା'ସାନଭଉଣୀ



ବିନିର ମଧ୍। ମିନିବାପା କଟକରୁ ବଢ଼ିଆ ମିଠେଇ ଆଣିଥାନ୍ତି। କାନ ଫୋଡ଼ାଇଲା ବେଳକୁ ସେ ମିଠେଇରୁ ମେଞ୍ଚାଏ ପାଟିରେ ପୂରାଇ ଦେଲେ। ସେତେବେଳକୁ ମିନିକୁ ଚଉଦ ବର୍ଷ ହେଲାଣି। ସେଠାରେ ଦେଢ଼ ଦିନ ରହିଲେ। ଓପର ଓଳି ମନ୍ଦିର ହତାରେ ବସିଥାନ୍ତି। ମିନିବୋଉଙ୍କର ବଡ଼ମାଆଙ୍କର ସଙ୍ଗାତଙ୍କ ପୁଅ ରଘୁନାଥଙ୍କ ପୂଜକ। ବୁଢ଼ୀ ମନ୍ଦିର ଆସିଥିଲେ। ବୋଉ ଚିହ୍ନିଲେ। ସଙ୍ଗାତମା'ମଧ ସଙ୍ଗାତ ଝିଅମାନଙ୍କୁ ଚିହ୍ନିଲେ। କେତେ କଥା ପଚାରିଲେ। ତାଙ୍କ ଘରକୁ ଡ଼ାକି ନେଲେ। ପିଲାମାନଙ୍କୁ ଖାଇବାକୁ ଦେଲେ। ଖରା ଦିନ ତ। ସଜ ପଖାଳ ତରକାରି ପତ୍ର ଦେଲେ। ପିଲାମାନେ ଖାଇଲେ। ସଙ୍ଗାତ ମା'ଙ୍କର ଦୁଇ ବୋହୂଙ୍କୁ ଦେଖିଲେ। ଦୁଇ ବୋହୂ ଏକାପରି ଦିଶୁଥାନ୍ତି। ମିନିର ମାଉସୀ ଦେଖି ଖୁସିହେଲେ। ସଙ୍ଗାତମା' ବହୁତ ଦୁଃଖ ସୁଖ ହେଲେ। ମିନିମାମୁଁମାନେ ସଙ୍ଗାତମା'ଙ୍କୁ ଦଣ୍ଡବତ ହେଲେ। ରଘୁନାଥଙ୍କର କାମ ସାରି ଫେରିବାକୁ ଯୋଗାଡ଼ ହେଲେ। ରଘୁନାଥ ମନ୍ଦିରର ଗୋଟେ ବଡ଼ ଷଣ୍ଢ ବୁଲୁଥାଏ। ଯାତ୍ରୀମାନେ ଯେ ଯାହା ଦେଲେ ଷଣ୍ଢ ଖାଉଥାଏ। ଆଉ ଯା ପାଖକୁ ତା ପାଖକୁ ଯାଉଥାଏ। ଖାଇକରି ଏକର ସେକର ହୋଇ ତା'ର ବୁଲିବା କାମ। ସେ ଷଣ୍ଢଟା ମିନିବୋଉକୁ ଏକ ମୁଣ୍ଡିଆ ମାରିବାକୁ ଯାଉଥିଲା। ସେ ସେଥିରୁ ବର୍ତ୍ତିଗଲେ। ସେ ଷଣ୍ଢ ଡ଼ରରେ ମିନି ତା'ର ମାଉସୀ ଓ ପିଲାମାନେ ତଟସ୍ଥ ହୋଇ ଛାନିଆରେ ବିଛାଡ଼ି ହେଇ ଯାଉଥିଲେ। ପଣ୍ଡା ପଢ଼ିଆରୀମାନେ ଷଣ୍ଢଟାକୁ ଛାଡ଼ି ଦେଇଥାନ୍ତି, ଲୋକମାନଙ୍କୁ ହଇରାଣ କରିବାକୁ। ଓଡ଼ଗାଁରୁ ପୁଣି ବସ୍‌ରେ ଫେରିଲେ। ମିନିମାମୁଁଙ୍କ ବସାଘରକୁ ଆସିଲେ। ଆଗ ବସାଘର ଠାରୁ ଆଉ ଟିକେ ଭଲଥିଲା। ପାଖରେ ଭଲ ପଡ଼ୋଶୀ ବ୍ରାହ୍ମଣ ଘର। ସେ ପଡ଼ୋଶୀ ସ୍ତ୍ରୀଲୋକ ଏକା ଥାନ୍ତି। ତାଙ୍କର ସାନ ଝିଅଟିଏ ପାଞ୍ଚ ବରଷର ଥାଏ। ତା ନା କୁନି। ଲମ୍ୱା ମୁହଁ, ଖୁବ୍ ଗୋରା। ଶାନ୍ତଶିଷ୍ଟ ପିଲାଟିଏ। କାନରେ ଦୁଇଟି ନୋଇକ ପିନ୍ଧିଥାଏ। ହାତରେ ଦୁଇ ପଟ ଲେଖାଏଁ ରୁପା ଚୁଡ଼ି ଥାଏ। ତା'ର ବଡ଼ ଭଉଣୀଟି ମିନି ସାଙ୍ଗର କି ମିନିଠାରୁ ଟିକିଏ ବଡ଼ ହେବ ବୟସରେ। ସେ ଶାଶୁ ଘରକୁ ଚାଲି ଯାଇଥିଲେ। ପନ୍ଦର ବରଷରେ। ପଡ଼ୋଶୀ ବ୍ରାହ୍ମଣ ସାନ ଝିଅଟିକୁ ଧରି ଏକା ଥାନ୍ତି। ସ୍ୱାମୀ ତାଙ୍କର ରେଙ୍ଗୁନ୍‌ରେ ଥାନ୍ତି। ଚିଠି ପତ୍ର ମଧ ବିଦେଶରୁ ଆସୁ ନଥାଏ। ବଡ଼ଝିଅଟିକୁ ଶାଶୁ ଘରକୁ ପଠାଇଦେଇ ସ୍ୱାମୀଙ୍କର ଆସିବା ପଥକୁ ଆଶା କରି ନଥାନ୍ତି। ମିନିବୋଉ ମାଉସୀଙ୍କୁ ପଡ଼ୋଶୀ ପାଖରେ ପାଇ ଦୁଃଖ ସୁଖ କଥାବାର୍ତ୍ତାରେ ଅନେକ ସମୟ କାଟୁଥାନ୍ତି। ମିନିକୁ ଯେତେବେଳେ ପ୍ରଥମେ ଦେଖିଲେ, ତାଙ୍କ ବଡ଼ଝିଅ ଖାଲି ମନେ ପଡ଼ିଲା। ମିନି ତ ମାମୁଁଘର ଗାଁରେ ଥିଲା। ଆଗ ବସାଘର ବଦଳାଇ ଏ ଘର ନେଲାପରେ ମିନି

ଆସିଲା। ତେଣୁ ସେ ପଡ଼ୋଶୀ ସ୍ତ୍ରୀଲୋକ ମିନିକୁ ଭାରି ଭଲ ପାଇଲେ। କହିଲେ ପ୍ରେମ ସାଥୀରେ ତ ସଙ୍ଗାତ ବସାଇ ଦିଅନ୍ତି। ପ୍ରେମକୁ ଦେଖିଲା ପରି ଲାଗୁଛି। ସବୁବେଳେ ପ୍ରେମ ମୋର ମନେ ପଡୁଛି। ପ୍ରେମ ପୁଣି ତା'ଶାଶୁଘରୁ ଆସିଲା। ମିନି ବିନିଙ୍କ ସାଙ୍ଗରେ ସାଙ୍ଗସାଥୀ ହେଲା। ମିନି ସେତେ ସାଙ୍ଗ ହୁଏନା। ସେ ତ ଶାଶୁ ଘର ବୋହୂ ହେଲାଣି। ତା'ପାଖରୁ ମିନି କ'ଣ ଶୁଣିବ? ଶାଶୁ ଘର ଗପ ଶୁଣିବାକୁ ମିନିକୁ ଭଲ ଲାଗେ ନାହିଁ। ସେ ତା ନିଜ ଘରେ ଥାଏ। ମାଉସୀଙ୍କ ପାଖରୁ ରନ୍ଧାବଢ଼ା ଶିଖେ। ମାଂସ ରାନ୍ଧେ। କାକରା ମଧ କରି ଶିଖେ। ଭାତ ଡ଼ାଲି ତରକାରି କରେ। ରାନ୍ଧିବାକୁ ଭଲ ଲାଗେ ମିନିକୁ। ମାଉସୀ କହନ୍ତି ୧୪/୧୫ ବର୍ଷର ଝିଅ ହେଲୁ ଆସି, ତୁ ରନ୍ଧା ବଢ଼ା କର। ମିନି ତା'ମାଉସୀଙ୍କୁ ଭାତ ବାଢ଼ିଦିଏ। ମାଉସୀଙ୍କ ପାଇଁ ପାନ ଭାଙ୍ଗିଦିଏ। ରାତିରେ ମାଉସୀଙ୍କ ପାଖରେ ଶୁଏ। ବୋଉଙ୍କ ପାଖରେ ମିନି ତଳ ଭଉଣୀ ତା ତଳ ଭାଇ ତିନୋଟି ଶୁଅନ୍ତି।

ବ୍ରାହ୍ମଣୀ ଦିନେ ସକାଳୁ ଉଠି ବାହାରକୁ ଗଲେ। ଦେଖିଲେ ବାହାରେ ଗୋଟେ ବ୍ରତ ପଡ଼ିଛି। ସେ ବ୍ରତଟିକୁ ଘରକୁ ଆଣିଲେ। ମିନିବୋଉ ମାଉସୀଙ୍କୁ ପଚାରିଲେ, ଏ ବ୍ରତଟି ପାଇଲି। କ'ଣ କରିବି? ମିନିବୋଉ କହିଲେ ଚାଉଳ ମାଣେ ରଖି ତା'ଉପରେ ବ୍ରତଟି ରଖି ଦେବ। ତା'ପରଦିନ ଦେଖିବ ଚାଉଳ ମାଣକରୁ ବେଶି ହୋଇଛି। ତା ହେଲେ ସେ ଉପବାସ କରିବ। ସୌଭାଗ୍ୟ ହେଲେ ସେ ବ୍ରତ ମିଳେ। ଆଉ ଚାଉଳ ମଧ ମାଣରୁ ଉଛୁଳି ତଳେ ପଡ଼ିଯାଏ। ଭାଗ୍ୟ ନଥିଲେ ଚାଉଳ କମ୍ ହୋଇ ଯାଏ ମାଣକରୁ। ସେ ବ୍ରତ ଆଉ କରିବା ଦରକାର ହୁଏ ନାହିଁ। ବ୍ରାହ୍ମଣୀ ସେଠୁ ଚାଉଳ ମାପି ରଖିଲେ। ଚାଉଳ ଭର୍ତ୍ତି ହୋଇ ତଳେ ପଡ଼ିଲା। ସେ ସେଠୁ ବ୍ରତ କଲେ। ସେ ବ୍ରତଟା ଅନନ୍ତ ବ୍ରତ। ପଡ଼ିଶା ବ୍ରାହ୍ମଣ, ବ୍ରାହ୍ମଣୀଙ୍କ ସ୍ୱାମୀ ବିଦେଶରୁ ଆସିବେ ବୋଲି ଶୁଣାଗଲା। ଚିଠି ପତ୍ର ମଧ ଆସିଲା। ବ୍ରାହ୍ମଣୀ ଆନନ୍ଦ ହେଉଥାନ୍ତି। କିଛି ଦିନ ପରେ ବ୍ରାହ୍ମଣୀଙ୍କର ସ୍ୱାମୀ ଆସିଲା। ଦୁଇଟି ଝିଅ ଥିଲେ। ଗୋଟିଏ ପୁଅ ହେଲା। ବ୍ରାହ୍ମଣୀଙ୍କର ଆନନ୍ଦ କହିଲେ ନ ସରେ। ପୁଅଟି ଦେଖିବାକୁ ସୁସ୍ଥ ସବଳ ଓ ଦେହର ରଙ୍ଗ ଧଳା। ଦିନକୁ ଦିନ ଚନ୍ଦ୍ରମା ପରି ବଢ଼ିବାକୁ ଲାଗିଲା। ପୁଣି ଆଉ ଗୋଟିଏ ପୁଅ ହେଲା। ବ୍ରାହ୍ମଣ, ବ୍ରାହ୍ମଣୀ ମହା ଆନନ୍ଦରେ ଘରଦ୍ୱାର କରି ରହିଲେ। ମାଉସୀ ପଡ଼ୋଶୀଙ୍କୁ କହିଲେ, ପ୍ରେମର ବୋଉ, ଆମେ ତମ ପଡ଼ିଶାକୁ ଆସିଲୁ, ତମର ତ ବହୁତ ଲାଭ ହେଲା। ପଣ୍ଡା ବିଦେଶରୁ ଆସିଲେ। ପୁଅ ଜନ୍ମ କଲ, ସୁନାହାର ତିଆରି କଲ।

— ୧୦ —

ମିନିବୋଉ ହେରିକା କିଛି ଦିନ ପରେ ସେ ବସାଘର ଛାଡ଼ି ମାମୁଁଙ୍କର ନୂଆ ଘରକୁ ଗଲେ। ତଳ ସାଲାରେ ବଡ଼ ବଡ଼ ରୁମ୍ ଦୁଇଟା। ରୋଷେଇ ଘର ଅଗଣାରେ ତିଆରି ହେଲା। ବଡ଼ ଏକ ଅଗଣା। ଦାଣ୍ଡ ପଟରେ ଏକ ବଡ଼ ହଲ୍ ପରି ଅଗଣା। ସେଇଟା ମିନିମାମୁଁଙ୍କର ଦୋକାନ ଘର। ଆଉ ଗୋଟିଏ ଟୁଙ୍ଗୀ ଘର। ଦୋକାନ ଘର ପାଖକୁ ଦାଣ୍ଡଘର। ପାଖରେ କଇଥ ପୋଖରୀ। ସେଠୁ ଚାକର ପିଲାଏ ପାଣି ଭାର କରି କାନ୍ଧରେ ବୋହି ଆଣନ୍ତି। ବାରିଆଡ଼େ ପଡ଼ିଶାଘର କୂଅଟାଏ ଥାଏ। ସେ ପାଣି ଖାଆନ୍ତି ନାହିଁ। ସେ ପାଖରେ ହାଡ଼ି ସାଇଟା। ସେ ସାଇକୁ ଲାଗି ଗୋଟାଏ ପଡ଼ିଆଟାଏ ଖାଲ ହୋଇଥାଏ। ସେଠି ସେ ହାଡ଼ିସାଇର ସମସ୍ତେ ଝାଡ଼ା ଫେରନ୍ତି। ବର୍ଷା ଦିନେ ସେ ଖାଲ ଜାଗାଟା ପାଣି ଭର୍ତ୍ତି ହୋଇଯାଏ। ସେ ପାଣି ଏ କୂଅକୁ ଝରେ। ତେଣୁ ସେ ପାଣି ଅସନା ଲାଗିବା ଯୋଗୁଁ ବ୍ୟବହାର କରନ୍ତି ନାହିଁ। ମିନି ମାମୁଁ କହନ୍ତି ସେ ପାଣିରେ ଗାଧୋଇଲେ ଟାଇଫଏଡ୍ ଜ୍ୱର ହେବ। ଆଗରୁ ଜଣେ ଭଡ଼ାଟିଆ ପଡ଼ିଶା ଘରେ ଥିଲେ। ସେ ଘରେ ମିନି ମଝିଆଁ ମାମୁଁଙ୍କର ପୁଅଟିଏ ହେଲା। ମାଇଁ ସେ ଘରେ ବର୍ଷେ ରହିଲେ।



ମିନିବାପା ସେତେବେଳେ କଳାହାଣ୍ଡିରେ ଥିଲେ। କଟକ ଆଶା ପ୍ରେସ୍ କାମ ଛାଡ଼ିଦେଇ ସେ ଯେତେବେଳେ ଆସିଥିଲେ ସେତେବେଳେ ମିନିର ଢେଢେମା ତାଙ୍କର ବଡ଼ଝିଅ ପାଖରେ ଥିଲେ। ମିନିବାପା ଯାଇ ତାଙ୍କୁ ନେଇ ଆସିଲେ। ମିନିର ଢେଢେମା ବଡ଼ ବ୍ୟସ୍ତ ହେଲେ। ଆସି କହିଲେ, ମୋ ପୁଅର ଚାକିରି ଗଲା, ନାତୁଣୀ ମୋର ବାହା ହୋଇ ନାହାନ୍ତି। ମୁଁ ଆସି ଏତେ କାଳ ଜିଇଁଲିଣି, ମୋତେ ତ ଯମ ନଉନାହିଁ। ଚୈତ୍ର ମାସରେ ମିନିର ମାଆ ମଙ୍ଗଳା ପୂଜା କରନ୍ତି। ସେ ପୂଜାରେ ସାତୋଟି କାଠି ହଳଦୀ କନାରେ ଗୁଡ଼ାଇ ରଖନ୍ତି। ଉପର ଦୁଇ ପରସ୍ତ ଉପରେ କାଠି ରଖିଥାନ୍ତି। ସଞ୍ଜବେଳେ ଯାଇ କନା ପରସ୍ତ ଖୋଲି କାଠିକୁ ଦେଖନ୍ତି। ଯଦି କାର୍ଯ୍ୟ ସିଦ୍ଧ ହେବାର ଥାଏ ତେବେ କାଠି ଦୁଇଟି ବା ତିନୋଟି ଭିତରୁ ଚାଲିଆସି ଉପର ପରସ୍ତ କନାରେ ଗୁଡ଼େଇ ହୋଇ ରହିଥାଏ। ମିନି ଢେଢେମା ମାନସିକ କରିଥାନ୍ତି। ପୁଅର ଚାକିରି ହେବ କି ନାହିଁ। ଏଇ ମାନସିକ କରି କାଠି ଗୁଡ଼େଇ ଦିନେ ସଞ୍ଜରେ ଦେଖିଲେ ଯେ, ସେ କାଠି ଉପର ପରସ୍ତକୁ ଆସିଛି। ଜାଣିଲେ ଯେ, ପୁଅର ନିଶ୍ଚିତ ଚାକିରି ହେଉଛି ଓ ନାତୁଣୀର ଭଲ ବର ହେଉଛି। ମିନିବାପା କଳାହାଣ୍ଡି ଚାକିରିରେ ଗଲେ। ମିନିବାପା ଯେତେବେଳେ କଳାହାଣ୍ଡିରେ ଥିଲେ ସେ ସମୟରେ ସେ ଚିଠିରେ ଲେଖିଥିଲେ ଯେ, "ମହାମାନବଙ୍କର ମହାପ୍ରୟାଣ ହେଲା।" ମହାତ୍ମା ଗାନ୍ଧୀ ମରିଥିଲେ। ମିନିର ସାଙ୍ଗମାନେ ଘରେ ଆସି କହିଲେ ଯେ, ଗାନ୍ଧୀ ବୁଢ଼ାଟା ମରିଗଲା। କିଏ ମାରିଦେଲା। ତା'ଆଗରୁ ମିନି ବଡ଼ମାମୁଁ ରାତିରୁ ଉଠାଇ ଲଞ୍ଜାତାରା ପଡ଼ିଥିବାର ଦେଖାଇଥିଲେ। ବଡ଼ମାମୁଁ କହନ୍ତି, ଲଞ୍ଜାତାରା ଆକାଶରେ ଦେଖାଗଲେ ଦେଶର ନେତାମାନେ ମରନ୍ତି। ଗାନ୍ଧୀ ମରିବାର କେତେ ଦିନ ପରେ ମିନିର ଢେଢେମା ମଲେ। ମିନିର ଢେଢେମା'ଙ୍କୁ ୯୫ ବର୍ଷ ହୋଇଥିଲା। କୁଜି ବୁଢ଼ୀ ହୋଇଯାଇଥିଲେ। ମିନି ଢେଢେମା ମଲାବେଳକୁ ମିନିବାପା କଳାହାଣ୍ଡିରେ ଥିଲେ। ଏଠୁଁ ଟେଲିଗ୍ରାମ୍ ଗଲାବେଳକୁ ସେ କଳାହାଣ୍ଡିରୁ ଅନ୍ୟ ଯାଗାକୁ ଟୁର୍‌ରେ ଚାଲିଯାଇଥିଲେ। ମିନିବାପା ସ୍ୱପ୍ନ ଦେଖିଲେ ଯେ, ତାଙ୍କ ମାଆ କହୁଛନ୍ତି ଉଠୁ ଉଠୁ, ଏଠି କାହିଁକି ଶୋଇଛୁ। ଘରକୁ ଚାଲିଯା। ମିନିବାପାଙ୍କର ନିଦ ଭାଙ୍ଗିଗଲା। ସେଠାରୁ ଫେରି ଟେଲିଗ୍ରାମ୍ ଦେଖିଲେ ଯେ, ତାଙ୍କ ମାଆ ମରି ଯାଇଛି। ସେ ମାଆଙ୍କୁ ନ ଦେଖିପାରି ବହୁତ କାନ୍ଦିଲେ। ଘରକୁ ଆସିଲେ। ମିନିର ଭାଇଟି ସବୁ କାମ ତୁଲାଇ ଥିଲା। ମା ମରିଗଲେ ବୋଲି ସମସ୍ତେ କାନ୍ଦି ମନ ଦୁଃଖରେ ଥିଲେ। ଢେଢେମା ମରି ଗଲାରୁ ମିନିକୁ ଆଉ କିଛି ଭଲ ଲାଗିଲା ନାହିଁ। ମିନିର ପିଉସୀ ଆସିଲେ। ସେ ମଧ୍ୟ ସେ ପାଖରେ ଗୋଟେ ଗାଁରେ ତାଙ୍କ ଝିଅ ଘରେ ଥିଲେ। ସେ ବି ତାଙ୍କ ମା'ଙ୍କୁ ଦେଖିପାରିଲେ ନାହିଁ। ମିନିବୋଉ ନିଜ

ହାତରେ ମଇଳା ସଫା କରି ଗୋଡ଼ ହାତ ଆଉଁଷି ପାଖରେ ଜଗି ବସି ଥାଆନ୍ତି। ନ ଖାଇ ନ ପିଇ ତିନି ଦିନ ତିନି ରାତି ଅନିଦ୍ରା ହୋଇ ମିନିଟି ବୋଉଙ୍କୁ ସାହାଯ୍ୟ କରୁଥାଏ। ବୁଢ଼ୀ ବୈଶାଖ ମାସ ଅକ୍ଷୟତୃତୀୟା ଦିନ ବୈକୁଣ୍ଠପୁର ଗଲେ। ମିନି 'ଜେଜେ ମାଆ ବଡ଼ ଧାର୍ମିକ ଥିଲେ। ମିନି ସବୁବେଳେ ଜେଜେମା'ଙ୍କ କଥା ଭାବିଲା। ତାକୁ ଘର ମଧ୍ୟରେ ସୁଖ ଲାଗିଲା ନାହିଁ। ପିଉସୀ ଆସି ରହିଲେ। ସଦାବେଳେ ଜେଜେମାଙ୍କ କଥା କହିଲା। ମିନିର ଜେଜେମା ମୋଟା ମୋଟି ହୋଇ ବାଙ୍ଗିରି ଥିଲେ। ଦାନ୍ତ ଦୁଇଟି ଉପର ପାଟିରେ ବାହାରି ଥାଏ। ସବୁବେଳେ ହସ ଖୁସିରେ କଥାବାର୍ତ୍ତା କରନ୍ତି। ମିନିବୋଉକୁ ଭାରି ଭଲ ପାଆନ୍ତି। ମିନିବୋଉ ଶାଶୁଙ୍କୁ କିଛି କାମ କରାଇ ଦିଅନ୍ତି ନାହିଁ। ନିଜେ ଦୁଇ ଓଳି ରୋଷେଇ କରି ଶାଶୁଙ୍କୁ ଖାଇବାକୁ ଦିଅନ୍ତି। ଶାଶୁଙ୍କର ଗୋଡ଼ ହାତ ଘସି ଦିଅନ୍ତି। ଶାଶୁ ମଧ୍ୟ ବୋହୂକୁ ଭଲ ଦେଖିପାରନ୍ତି। ଏକେତ ମାଆ ଛେଉଣ୍ଡ ଝିଅଟିଏ ବୋଲି ଭଲ ପାଆନ୍ତି। ମିନିବୋଉତ ଭାରି ଗୁଣର। ମିନିବୋଉ ଯେତେବେଳେ ବୋହୂ ହୋଇ ଆସିଲେ ଏତେ ରକମର ପିଠାପଣା, ତରକାରି ପତ୍ର କରି ଯା' ଦେଢ଼ଶୁର ଓ ଶାଶୁଙ୍କୁ ଖୁଆଉଥିଲେ। କାକରା ପିଠା, ଦୁଧବରା, ଚନ୍ଦ୍ରକାନ୍ତି, ପୁଳି, ଚକୁଳି, ଏଣ୍ଡୁରି ପିଠା ପର୍ଯ୍ୟନ୍ତ। ତରକାରି ଅନେକ ପ୍ରକାରର ମିନି ବଡ଼ବାପାଙ୍କର ଦରକାର ହୁଏ। ସବୁ ମିନିବୋଉ ରାନ୍ଧନ୍ତି। କଖାରୁ ବଡ଼ି, ଚିଙ୍ଗୁଡ଼ି ମାଛ ଯା'ଙ୍କର ଅଲଗା ତରକାରି ନିତି ହୁଏ। କେବଳ ଗୁରୁବାର ଛଡ଼ା। ନିତି ସକାଳେ ମୁଗଡ଼ାଲି ଆଉ କାନ୍ଦୁଲଡ଼ାଲି ହୁଏ। ମାଳରୁ ଆସୁଥିବା ବଡ଼ କାନ୍ଦୁଲ ସିଝା ପରଜି ମା' ରାନ୍ଧିଥାନ୍ତି। ପଣସକଠା ସହିତ ସବୁ ପରିବା ମିଶି ସାରୁ ବାଇଗଣ ବେସର ହୁଏ। ଶାଗ ଖରଡ଼ା ଓ କାଞ୍ଜି ହୁଏ। ନହେଲେ ଆମ୍ବିଳ ହୁଏ। କଇଥ ଚଟଣି ହୁଏ। ଆଉ ଯେତେପ୍ରକାର ଭଜାଭଜି-କଞ୍ଚା କଦଳୀ ଭଜା, ବାଇଗଣ ଭଜା, ଦେଶୀ ଆଳୁ ଭଜା, ଜହ୍ନି ଦିନେ ଜହ୍ନି ଭଜା, ପୋଟଳ ଭଜା, ବେସନଗୋଳା କାଙ୍କଡ଼ ଭଜା ହୁଏ ତ କୋଉଟା ଖାଲି ଭଜା ହୁଏ। ଏତେ ପ୍ରକାର ରନ୍ଧା ହେଲେ ମିନି ବଡ଼ବାପା ଖାଉଥିଲେ। ପୁଣି ମାଛ ଯଦି ହେବ ତିନି ରକମର। ସବୁଥିରେ ମସଲା, ରାଗ, ବେସର। ମିନିବାପାଙ୍କର ଓଲଟା। ସବୁ ସିଝା ଖାଇବାକୁ ପସନ୍ଦ କରନ୍ତି। ଦୁଇ ତିନିଟା ତରକାରିରୁ ଅଧିକା ହେଲେ ତାଙ୍କୁ ବିରକ୍ତ ଲାଗେ। ମିନିବାପା କହନ୍ତି, ଭାଇନା ମସଲା ଖାଇ ଖାଇ ଦେହ ଖରାପ ହେଉଛି। ମିନିବାପା ସାତ ବର୍ଷ ଦିନୁ ବାହାରେ ରହି ପାଠ ପଢ଼ିଲେ। ବଡ଼ ହେଲାଠୁଁ ବ୍ରାହ୍ମ ସମାଜରେ ମିଶି କାମ କଲେ। ମିନି ଜେଜେମା ସବୁବେଳେ କାନ୍ଦନ୍ତି। ପୁଅ ଆଉ ଫେରିବ ନାହିଁ ବୋଲି। ସେ ପୁଣି ଘରକୁ ଫେରିଲେ। ମାଆ କଥା ମାନି ବାହାହେଲେ। ବାହାହେଲା ବେଳକୁ ୩୫ ବର୍ଷ ହେଲାଣି। ମିନି ଜନ୍ମ ହେଲା ବେଳକୁ

ମିନିବାପାଙ୍କୁ ୪୦ ବର୍ଷ। ମିନି ପଛକୁ ତା'ର ଆଉ ପାଞ୍ଚୋଟି ଭାଇ ଭଉଣୀ ହେଲେ। ମିନିର ଜେଜେମା ମଲା ପରେ ପିଉସୀଙ୍କୁ ଆଉ ପିଲାମାନେ ଛାଡ଼ିଲେ ନାହିଁ। ପ୍ରାୟ ଅଳ୍ପ ଦିନ ପାଇଁ ତାଙ୍କ ଘରକୁ ଯାଇ ଚାଲି ଆସନ୍ତି। ଏହିପରି ପିଉସୀଙ୍କୁ ପାଖରେ ରଖି ମିନି ଓ ତା'ର ଭାଇ ଭଉଣୀ ଖୁସି ହୁଅନ୍ତି।

ଆଉ ଚାରି ପାଞ୍ଚ ବର୍ଷ ମିନିଘର ତାଙ୍କ ମାମୁଁଙ୍କ ନୂଆଘର ବସାରେ ରହିଲେ। ବର୍ଷେ ଛଅ ମାସରେ ଥରେ ମାମୁଁଙ୍କ ଗାଁଘରକୁ ଯାଆନ୍ତି। ପୁଣି ଫେରି ଆସନ୍ତି ନୂଆଘରକୁ। ମିନିବାପା ବ୍ରହ୍ମପୁର ସହରକୁ ଆସିଲେ। ଘର ଭଡ଼ା ନେଲେ ଓ ପିଲାମାନଙ୍କୁ ନେବାର ବ୍ୟବସ୍ଥା କଲେ। ମିନିବାପା, ମିନିବୋଉ, ପିଲା ଓ ପିଉସୀଙ୍କୁ ଧରି ବ୍ରହ୍ମପୁର ଆସିଗଲେ। ମିନିକୁ ଭଲ ଲାଗିଲା। ତାଙ୍କ ବାପା, ବୋଉ, ପିଲାମାନେ ଏତେ ଦିନରେ ସବୁ ଏକାଠି ରହିଲେ ବୋଲି। ମିନିକୁ ବାହାଘର କରିବା ପାଇଁ ସମସ୍ତେ ବ୍ୟସ୍ତ ହେଲେଣି। ବର ଫୁଲା କାଳ ପଡ଼ିଛି। ତେଣୁ ଯେଉଁଠି ପ୍ରସ୍ତାବ ପଡ଼ିବ ସେଠି ଆଗ ଯୌତୁକ କ'ଣ ଦେବେ। କେତେ ଟଙ୍କା ଦେବେ, ଝିଅ କ'ଣ ପଢ଼ିଛି, ପଚାରିବେ। ମିନିକୁ ବାରବର୍ଷ ବେଳୁ ମିନିବାପା ତା'ପାଇଁ ବର ଯୋଗାଡ଼ରେ ଲାଗିଥାନ୍ତି। ମିନିକୁ ଏସବୁ ସତରେ ଭାରି ବିରକ୍ତ ଲାଗୁଥିଲା। ସତର ବୟସରେ ମିନିମାମୁଁ ତା'ପାଇଁ ବର ଯୋଗାଡ଼ କରୁଥିଲେ। ସେତେବେଳେ ମଧ୍ୟ ମିନି ମନେ ମନେ ବିରକ୍ତ ହେଉଥିଲା। ସେ ଭାବୁଥିଲା ତା'ପାଇଁ ନିଶ୍ଚୟ କିଏ ଆହୁରି ଅଛନ୍ତି, ଏମାନେ ଏତେବେଳୁ କାହିଁକି ଏପରି ବ୍ୟସ୍ତ ହେଉଛନ୍ତି? ସେ ନିଜେ ପାଠ ପଢ଼ି ନପାରି ଦୁଃଖିତା ହେଉଥିଲା। ଆଉ ଲୋକଙ୍କ ବ୍ୟସ୍ତ ହେବା ସେ ବୁଝି ପାରୁଥିଲା। ମାତ୍ର ସେ ନିଜେ ବିବାହ କରିବ ଅଳ୍ପ ବୟସରୁ, ଏକଥା ଭାବୁ ନଥିଲା। ମିନିକୁ ୧୯ ବର୍ଷ ହେଲାଣି ଆସି। ମିନିବୋଉ ଝିଅକୁ କୋଉଠି ବାହା ଦେବେ ବହୁତ ଭାବିଲେଣି। ଦୁଇଟି ଜାଗାରେ ବର ଠିକ୍ ହୋଇଥାଏ। ଯୋଉଠି ଜାତକ ମେଳ ହେବ, ସେଇଠି ହେବ। କୋଉଠି ହବ ନହବ, ଏପରି ଚିନ୍ତାରେ ମିନିବୋଉ ରାତିରେ ଶୋଇଛନ୍ତି, ସ୍ୱପ୍ନ ଦେଖିଲେ, ମିନିର ବଡ଼ମା କହୁଛନ୍ତି ମିନିବୋଉକୁ, ମଥାରେ ଏକ ବଡ଼ ସିନ୍ଦୂର ଟୋପା ପିନ୍ଧିଛନ୍ତି। କାହିଁକି ଏତେ ଚିନ୍ତା କରୁଛୁ? ଉତ୍ତମ ବର ବିଭା କରିବୁ। ମିନିବୋଉଙ୍କର ନିଦ ଭାଙ୍ଗିଲା। ସେ ଭାବିଲେ କିଏ ଏପରି କହିଲା? ମା, ସେହି ବାରାହୀ ଦୁର୍ଗାଦେବୀହିଁ କହୁଛନ୍ତି ବୋଲି ମିନିବୋଉ ବିଶ୍ୱାସ କଲେ। ମିନିକୁ ମଧ୍ୟ ଥରେ ଦୁଇଥର ଶୁଣାଇ କହିଛନ୍ତି, କାହିଁ ସେ ଉତ୍ତମ ବର କେଉଁଠି ଅଛି? ଏମିତି ହୁଅନ୍ତି। ମିନିମାଉସୀଙ୍କୁ, ପିଉସୀଙ୍କୁ, ମାମୁଁଙ୍କୁ କହି ପକାନ୍ତି। ଏକେତ ତାଙ୍କର ଧନ ପଇସା ନାହିଁ। ଝିଅ ଦୁଇଟି ବଡ଼। ପୁଅଟିମାନ ସାନ। ସ୍ୱାମୀ

ବୁଢ଼ା ହେଲେଣି। ଯାହା ଚାକିରିରୁ ପାଉଛନ୍ତି ଚଳୁଛନ୍ତି। ବିଲରୁ ଧାନ ଯାହା ପାଉଛନ୍ତି ବିକ୍ରି କରି ସେ ଟଙ୍କା ମଧ୍ୟ ଖର୍ଚ୍ଚ ହୋଇ ଯାଉଛି। ସୁନା, ରୁପା, ଅଳଙ୍କାରପତ୍ର ଏପର୍ଯ୍ୟନ୍ତ କିଛି କରିପାରି ନାହାନ୍ତି। କିଏ ଯଦି କହେ ଝିଅମାନଙ୍କ ପାଇଁ କିଛି କରୁନୁ କାହିଁକି, ମିନିବୋଉ କହନ୍ତି, ହଁ ବା ଘୋଡ଼ାଟେ ହେଲେ ଛାଟଟେ କ'ଣ ହେବ ନାହିଁ। ଘୋଡ଼ାତ ନାହିଁ, ଛାଟ ଏତେବେଳୁ ତିଆରି ହେଉଛି ? ଅନେକ ବୁଝିଯାଆନ୍ତି ସତ କଥା, ଏଗୁଡ଼ା କ'ଣ ହେବ।

ଦୁଇ ଜାଗାରୁ ବର ଆସିଥିଲେ ଧନ ଲୋଭରେ। ସେ ପାଖରୁ ଆଉ କୌଣସି ଉତ୍ତର ଆସିଲା ନାହିଁ। ମିନିବାପା ତାଙ୍କର ଶ୍ୱଶୁର ଘରୁ ଯୌତୁକ କିଛି ଆଣି ନଥିଲେ। ତେଣୁ ଯୌତୁକ କଥା ପଡ଼ିଲେ ସେ ଭାରି ରାଗନ୍ତି। କହନ୍ତି ଯୋଉ ଶଳା ଧନ ଖୋଜୁଛି, ସେ କ'ଣ ମୋ ଝିଅକୁ ଦେଖିବ ? ସେ ଶଳାକୁ ମୋ ଝିଅକୁ ଦେବି ନାହିଁ। ଗରିବ ଘର ହେଉ ପଛକେ ତାକୁ ମୋ ଝିଅକୁ ଦେବି। ମନେ ମନେ ମିନି ପାଇଁ ବ୍ୟସ୍ତ ହୁଅନ୍ତି। ସେ ଝିଅକୁ ବାହାର ସ୍କୁଲ୍ କଲେଜ୍‌କୁ ଛାଡ଼ି ପାଠ ପଢ଼ାଇଲେ ନାହିଁ। ନିଜେ ଘରେ ଯାହା ପଢ଼ାଇଲେ ସେତିକି। ମିନିବାପା ତାଙ୍କ ସରକାରୀ ଚାକିରି କାମରେ ରମ୍ଭା ଯାଇଥିଲେ। ସେଠାରେ ତାଙ୍କର ଜଣେ ପରିଚିତ ବନ୍ଧୁଙ୍କୁ ଭେଟିଲେ। ସେ ଭଦ୍ରଲୋକ ରମ୍ଭା ବାଳାଶ୍ରମର ମ୍ୟାନେଜର୍ ଥିଲେ। ମିନିବାପା ତ ମିନି ପାଇଁ ବ୍ୟସ୍ତ ଓ ଚିନ୍ତିତ ଥିଲେ। କେଉଁଠି ଭଲ ବର ପାତ୍ର ମିଳିବ ନିଘା ରଖିଥାନ୍ତି। ମିନି ପାଖକୁ ବିନି ମଧ୍ୟ ହୋଇ ଗଲାଣି। ଦୁଇଟି ଝିଅକୁ ଏକାବେଳେ ବିଭା ଦେବେ ବୋଲି ମନସ୍ଥ କରିଥାନ୍ତି। ଏଣେ ଚାକିରି ସରିବା ଉପରେ। ପୁଅମାନେ ପାରିବାର ହୋଇ ନଥାନ୍ତି। ରମ୍ଭା ବାଳାଶ୍ରମରେ ଦିନେ ପହଞ୍ଚିଲେ। ପରିଚିତ ଭଦ୍ରଲୋକ ଆଉ ତାଙ୍କର ସ୍ତ୍ରୀ ଚର୍ଚ୍ଚା କଲେ। ଭଦ୍ରଲୋକଙ୍କ ବ୍ୟବହାରରେ ମିନି ବାପା ଅତ୍ୟନ୍ତ ଖୁସି ହେଲେ। ଭଦ୍ରଲୋକଙ୍କର ଛଅଟି ପୁଅ, ଦୁଇଟି ଝିଅ ଥାଆନ୍ତି। ବଡ଼ ପୁଅଟି ବି.ଏ. ପଢ଼ିସାରି କିରାଣି ଚାକିରି କରିଥାନ୍ତି ଓ ଏମ୍.ଏ. ପଢ଼ିବାର ସ୍ୱପ୍ନ ଦେଖୁଥାନ୍ତି। ମିନିବାପା ଭଦ୍ରଲୋକଙ୍କ ସହ ବିଭାଘର ବିଷୟରେ କଥାବାର୍ତ୍ତା ହେଉଥାନ୍ତି। ଭଦ୍ରଲୋକଙ୍କର ପୁଅତ ଇଆ ଭିତରେ ଏମ୍.ଏ. ପଢ଼ିଥାନ୍ତି। ମିନିବାପା ଆଉଥରେ ରମ୍ଭା ଯାଇଥାନ୍ତି। ହଠାତ୍ ଦିନେ ମିନି ବାପା ରମ୍ଭାରୁ ଭଦ୍ରମହିଳା, ଭଦ୍ରଲୋକ ଓ ତାଙ୍କ ପିଲାଙ୍କୁ ସାଙ୍ଗରେ ଧରି ଘରେ ଆସି ପହଞ୍ଚିଲେ। ଆଗରୁ ପୁଅ ଝିଅଙ୍କ ବିଷୟ କଥାବାର୍ତ୍ତା ହେଉଥାନ୍ତି। ମିନିବୋଉ ଓ ମିନି ପ୍ରଭୃତିଙ୍କୁ କିଛି ଜଣା ନଥିଲା। ଏ ଭଦ୍ରମହିଳା ଆସିଛନ୍ତି ବୋଲି ମିନିବୋଉ ସାନଭଉଣୀ ଭଳି ଭାବି ତାଙ୍କୁ ଚର୍ଚ୍ଚା କଲେ। ମିନିପିଉସୀ ତାଙ୍କୁ ପଚରା ଉଚରା କଲେ। ମିନି, ବିନି ରୋଷେଇ କଲେ। ସେମାନେ ଖାଇ ପିଇ ରମ୍ଭା ଫେରିଲେ।

ମିନିବୋଉଙ୍କ ମନ ଟିକିଏ ଖୁସି ଲାଗିଲା। କାରଣ ଭଦ୍ରମହିଳା ଭଦ୍ରଲୋକ ଖୁବ୍ ଭଲ। ସେମାନଙ୍କର ପିଲାପିଲି ନଅଟି। ଛଅଟି ପୁଅ, ତିନିଟି ଝିଅ। ସେ ଭଦ୍ରଲୋକଙ୍କ ଘର କଟକ ଜିଲ୍ଲାରେ। ଗାଁ କଇଁପୁର। ମିନି ଯେତେବେଳେ ଶୁଣିଲା, କଇଁପୁର ବୋଲି ଗାଁ ଅଛି, ଭାରି ହସିଲା। ବିନିତ ଥଟ୍ଟାରେ ଉଡ଼ାଇ ଦେଉଥାଏ। ସେମାନେ ରମ୍ଭାରୁ ଆସିଥିଲେ ବୋଲି କଦଳୀ ଗଛରେ କଇଁ ଫୁଲଲେ। କହି ହସି ଗଡ଼ିଯାଏ। ରମ୍ଭାରେ ଥିବା ଭଦ୍ରଲୋକ ବର୍ଷକ ପରେ ବାରଙ୍ଗ ବଦଳି ହେଲେ। ତାଙ୍କ ପରିବାର ମଧ୍ୟ ଗାଁକୁ ଗଲେ। ମିନିବାପାଙ୍କର ମଧ୍ୟ ସେଠାରେ ମନ ଲାଗିଥାଏ। ତେଣୁ ସେ ମଝିରେ ମଝିରେ ବାରଙ୍ଗ ଯାଆନ୍ତି। ଦେଖା ଚାହାଁ କରି ଆସନ୍ତି। ସେ ତାଙ୍କ ପୁଅକୁ କେବେ ବିଭା କରିବେ ବୁଝି ଆସନ୍ତି। ତାଙ୍କ ଚିଠି ପତ୍ରକୁ ଅନାଇ ରହନ୍ତି। ଭଦ୍ରଲୋକଙ୍କ ରମ୍ଭାରୁ ବଦଳି ହେବା ପୂର୍ବରୁ ତାଙ୍କ ବଡ଼ପୁଅଙ୍କ ସହ ମିନିର ବିବାହ ନିମନ୍ତେ ନିର୍ବନ୍ଧ ସରିଥାଏ। ଅନ୍ୟ ବରପକ୍ଷ ପ୍ରସ୍ତାବ ଗୁଡ଼ିକ ତ ଭାଙ୍ଗି ଥିଲା। ଏଠାରେ ନିର୍ବନ୍ଧ ହୋଇଥିଲେ ମଧ୍ୟ ମିନିବୋଉଙ୍କର ମଧ୍ୟ ବିଶ୍ୱାସ ରହୁ ନଥିଲା। ମିନିବାପାଙ୍କୁ ଯେ ଶ୍ୱଶୁର ହେବେ, ସେ ଲେଖନ୍ତି ଯେ, ହଁ ଅମୁକ ଦିନରେ ବିଭାଘର କରିଦେବା। ମିନିବାପା, ବୋଉ ଆଶ୍ୱସ୍ତ ହୁଅନ୍ତି। ତା'ପରେ ଚିଠିଟା ଲେଖନ୍ତି ଯେ, ଏବେ ହୋଇ ପାରିବ ନାହିଁ। ପୁଅର ଚାକିରି ସ୍ଥାୟୀ ହୋଇ ନାହିଁ। ଘରେ ଅଭାବ ଲାଗି ରହିଛି ଇତ୍ୟାଦି ଇତ୍ୟାଦି। ମିନିବାପା ବ୍ୟସ୍ତ ହୋଇ ପଡ଼ନ୍ତି। ମିନି ବେଶି କିଛି ଭାବେ ନାହିଁ। ମିନିକୁ ବୟସ ହେଲାଣି କୋଡ଼ିଏ ଏକୋଇଶ ବର୍ଷ। ବୟସ ଯେତିକି ବଢୁଥାଏ, ସେତିକି ପରିବାରର ମାୟା ମମତା ଟାଣି ଧରେ। ମିନି ଭାବେ, ବୋଉକୁ ଛାଡ଼ି କୁଆଡ଼େ ଯାଇ କିପରି ରହିବି ? ବାପା ବୁଢ଼ା ହେଲେଣି। ସବୁ ବେଳେ ବ୍ୟସ୍ତ ହଉଛନ୍ତି। ଆଉ ଏ ଶୀତ ଦିନେ କିଏ ସକାଳୁ ଉଠି ଗାଧୋଇବ ଶାଶୁଘରେ ବୋହୂ ହୋଇ। ପୁଣି ଶାଶୁ ଶ୍ୱଶୁରଙ୍କୁ ଡ଼ରି ଚଳିବ। ସେ ବିଭାଘର ଯେତେ ଡ଼େରି ହେଉ ଭଲ। ତା'ମନକୁ ମଧ୍ୟ ଆସୁଥିଲା ଏ ପ୍ରସ୍ତାବ ଭାଙ୍ଗିବ ନାହିଁ, ଯେତେବେଳେ ଭଦ୍ର ଲୋକଙ୍କ ପୁଅ ନିଜେ କହିଛନ୍ତି ଯେ, ବାପା ଯେଉଁଠି କଥା ଦେଇଛନ୍ତି ସେଠାରେ ବିଭାଘର ହେବ। ଏଣେ ମିନି ତଳ ଭଉଣୀଟା ବାହା ହେବାକୁ ତରତର ହେଲାଣି। ତା'ପାଇଁ ମଧ୍ୟ ବରପାତ୍ର ଯୋଗାଡ଼ ହୋଇ ନିର୍ବନ୍ଧ ସରିଗଲାଣି। ବିନିର ଶ୍ୱଶୁର ପୁଅକୁ ବାହାଘର କରିବାକୁ ତରତର ହେଲେଣି। ମିନିଘର ବ୍ରହ୍ମପୁରରେ, ଯେଉଁ ବସାଘର ତା ମାଲିକ ଜଣେ ତେଲେଙ୍ଗା। ସେ ପ୍ରଥମେ ଛୋଟିଆ ଘରେ ଥିଲେ। ତାଙ୍କର ଆଉ ଗୋଟେ ବଡ଼ଘର ଥିଲା। ଯେଉଁ ଘରକୁ ମିନିଘର ବଦଳାଇଲେ। ତେଲେଙ୍ଗା ଭଦ୍ରଲୋକଙ୍କ ସାନ ଝିଅଟି ମିନିର ଭାରି ପ୍ରିୟ ସାଙ୍ଗ। ତେଲେଙ୍ଗା ବୁଢ଼ା ରାମକୃଷ୍ଣ ପରମହଂସଙ୍କର ପରମ ଭକ୍ତ ଥିଲେ। ସେ ତାଙ୍କ ସ୍ତ୍ରୀକୁ ଧରି ବନ-ଗମନ କରିଥିଲେ।

ବାର ବର୍ଷ ବଣ ଜଙ୍ଗଲରେ ଫଳମୂଳ ଆହାର କରି କଟାଇଥିଲେ। ରାମକୃଷ୍ଣ ପରମହଂସ କହିଲେ, "ତୁ ଯାଆ, ସଂସାରରେ ତୋର କାମ ସରିନାହିଁ।" ବଣରୁ ଫେରି ଆସିଲେ ସେ। ସେ ବୁଢ଼ା ବୁଢ଼ୀ ଭାତ ଖାଉ ନଥିଲେ। ଫଳ କିମ୍ବା ଦୁଧ ଖାଆନ୍ତି। ତାଙ୍କ ସାନଝିଅଟି ତାଙ୍କୁ ଅଜା ଆଈ ବୋଲି ଭାବୁଥିଲା। କାରଣ ସେ ନିହାତି ଛୋଟବେଳେ ତାକୁ ତାଙ୍କ ବଡ଼ଝିଅ ପାଖରେ ଛାଡ଼ି ଚାଲିଯାଇଥିଲା। ତାଙ୍କ ବଡ଼ଝିଅ ବାହା ହୋଇ ସାରିଥିଲା। ତା'ର କିଛି ସନ୍ତାନ ସନ୍ତତି ନଥିଲେ। ଏଣୁ ସାନଭଉଣୀଟିକୁ ଝିଅ ଭଳି ପାଳୁଥିଲେ। ସାନଭଉଣୀଟି ତାକୁ ମାଆ ବୋଲି ଜାଣିଥିଲା। ବୁଢ଼ା ବୁଢ଼ୀ ଫେରିବାରୁ ସେ ବୁଝିଲା ଯେ, ଏମାନେ ତା'ର ଅଜା, ଆଈ। ସେ ତେଲେଙ୍ଗା ବୁଢ଼ାଙ୍କ ଭଡ଼ା ଘରେ ମିନିର ବିଭାଘର ହେଲା। ମିନିର ବିଭାଘର ବେଳକୁ ମିନିବାପା ଚାକିରି ଛାଡ଼ି ବର୍ଷେ ହେଲା ଘରେ ଥିଲେ। ମିନିର ପିଉସୀ ମଧ୍ୟ ଘରେ ଥିଲେ। ଆଉ କୁଆଡ଼େ ଚାକିରି ବାକିରି କରିବା ପାଇଁ ଇଚ୍ଛା ଥିଲେ ମଧ୍ୟ ମିନି, ବିନିଙ୍କର ବିଭାଘର ନ ହେବା ଯାଏଁ ମୁଁ ଆଉ କୁଆଡ଼େ ଯିବି ନାହିଁ ବୋଲି ରହିଥାନ୍ତି। ଟଙ୍କା ଦୁଇ ହଜାର ହେବ ରଖିଥିଲେ। ଚାକିରି ଯିବା ପରେ ସେତକ ଘର ଖର୍ଚ୍ଚରେ ଶେଷ ହୋଇଗଲା।

ଦୁଇ ଝିଅଙ୍କର ବିଭାଘର ପାଇଁ ମିନିବାପା ତାଙ୍କର ଗାଁ ଘର ଓ ଜମି ବିକ୍ରି କରି ସେତିକିରେ ଝିଅ ଦୁହିଁଙ୍କର ବିଭାଘର କଲେ।

— ୧୧ —

ମିନିବର ଇତିହାସରେ ଏମ୍.ଏ. ପାଶ୍ କରି ଫାଷ୍ଟ କ୍ଲାସ୍ ଫାଷ୍ଟ୍ ହୋଇଥିଲେ। ଗୋଲ୍ଡ ମେଡ଼ାଲ୍ ପାଇଥିଲେ। ମିନିବାପା ମିନିକୁ ତିନି ଶହ ଟଙ୍କା ଖର୍ଚ୍ଚ କରି କାର୍‌ଟିଏ ଠିକ୍ କରି ପଠାଇଥିଲେ ତା'ଶାଶୁଘରକୁ।

ଶାଶୁଘରକୁ ଆସିବା ବାଟରେ କାର୍ ଖରାପ ହେଲା। କାର୍ ଠିକ୍ କରି ଆସୁ ଆସୁ ଘରେ ପହଞ୍ଚିଲା ବେଳକୁ ରାତି ତିନିଟା। ବୋହୂ ଘରେ ପହଞ୍ଚିଲା ବେଳକୁ ଶାଶୁ ପ୍ରଭୃତି ଶୋଇ ପଡ଼ିଥିଲେ। ବରକନ୍ୟାଙ୍କୁ ବନ୍ଦାପନା କରି ଘରକୁ ନେଲେ। ମିନି ତା'ବର ସହ ତା ଗୋସେଇଁ ଶାଶୁଙ୍କ ଗୋଡ଼ରେ ବସି ଚାଉଳ ଖେଳିଲା। ତାକୁ ସେ ବଡ଼ ବଡ଼ ଘର ଗୁଡ଼ିକ କେମିତି କେମିତି ଲାଗିଲା। କାନ୍ଥମାନଙ୍କରୁ ହାତେ ଲେଖାଏଁ ଛାଡ଼ି ଚାରି କର ଖୋଲା ଥାଏ। ରାତି ତିନିଟାରେ ତା'ଶାଶୁଘରେ ପହଞ୍ଚିଲା। ମାମୁଁ ଓ ସାନ ଭାଇ ସାଙ୍ଗରେ ଯାଇଥାନ୍ତି। ଶାଶୁଘରୁ ବରଯାତ୍ରୀ ସହ ଭଣ୍ଡାରୁଣୀଟିଏ ଯାଇଥିଲା। ମଟରରେ ବସି ଆସିଲା ବେଳେ ଭଣ୍ଡାରୁଣୀ ମୁଣ୍ଡ ବୁଲାଇ ହୋଇ ଗୁଡ଼ାଏ ବାନ୍ତି ହେଲା। ତାକୁ ଲେମ୍ବୁ ଶୁଙ୍ଘାଇ ଦେଲେ।



ମିନିମାମୁଁ ବାଟରେ ସରବତ ଗ୍ଲାସ୍ ଓ ବଡ଼ ରସଗୋଲାଟାଏ ମିନିକୁ ଖାଇବାକୁ ଦେଇଥିଲେ। କାରଣ ନୂଆ ହୋଇ ଶାଶୁଘରେ ଲାଜରେ କିଛି ଖାଇବ ନାହିଁ। ମିନି ସରବତ ଗ୍ଲାସ୍‌ଟିକୁ ପିଇଦେଲା। ମାମୁଁ ଏତେ ସ୍ନେହରେ ଦେଇଥିବା ରସଗୋଲାଟିକୁ ଖାଇବାକୁ ଇଚ୍ଛା ଥିଲେ ମଧ୍ୟ ପାଖରେ ଭଣ୍ଡାରୁଣୀଟି ବସିଥିଲାତ, କେମିତି ଖାଇବ କାଳେ କ'ଣ ଭାବିବ ସେ ଭଣ୍ଡାରୁଣୀ। ଲାଜରେ ସେ ନିଜେ ନ ଖାଇ ଭଣ୍ଡାରୁଣୀକୁ ସେ ରସଗୋଲାଟି ଦେଇଦେଲା। ସେ ତାକୁ ଦୁଇ ଗେଫାରେ ଖାଇଦେଲା।

ଶାଶୁଙ୍କ ଘରେ ପହଞ୍ଚିଲା ପରେ ମିନିକୁ ସରବତ ଗ୍ଲାସେ ପିଇବାକୁ ଦେଲେ। ତାର ପିଇବାକୁ ଇଚ୍ଛା ନଥିଲେ ମଧ୍ୟ ଶାଶୁଙ୍କ ବାଧରେ ଅଳ୍ପ କିଛି ପିଇଲା।

ମାଘମାସ ଶୀତରାତି ପାହି ଆସୁଥାଏ। ମିନି ତା'ଗୋସେଇଁ ଶାଶୁଙ୍କର ପାଟି ଶୁଣୁଥାଏ। ସେ ଖାଲି କହୁଥାନ୍ତି, ସତରେ ମୋ ନାତି ବାହା ହେବ ମୋ ମନରେ ନଥିଲା।

ରାତି ପାହିଲା। ମିନିକୁ ଗରମ ପାଣି ଗାଧେଇବାକୁ ଦେଲେ। ଗାଧୁଆ ଘରକୁ ମିନି ଯାଇ ଦେଖିଲା। ଚାରିଆଡ଼ ଡ଼ାଳପତ୍ରରେ ଗାଧୁଆ ଘର ହୋଇଛି। ସେଠି ଗାଧୋଇ ସାରି ଘରକୁ ଆସିଲା। ସକାଳେ ହୋମ ସରିଲା। ତା'ପରେ ତା'ଭାଇ ଓ ମାମୁଁ ମିନିକୁ ଶାଶୁ ଘରେ ଛାଡ଼ି ମନ ଦୁଃଖରେ ଗାଁକୁ ଆସିଲେ।

ମିନି ଶାଶୂ ଘରେ ଏକା ରହିଲା। ମିନି ବହୁତ କାନ୍ଦିଲା। କିଏ ବୁଝାଇବାକୁ ନାହିଁ।

ମିନି ତା ଶାଶୁଘରେ ମାସେ ରହିବା ପରେ କଟକରୁ ଶ୍ୱଶୁର ଚିଠି ଦେଲେ ସେଠାକୁ ବୋହୂକୁ ନେବା • ପାଇଁ। କଟକରେ ଶ୍ୱଶୁର ଓ ତାଙ୍କର ତିନି ପୁଅ ରହୁଥାନ୍ତି। ମିନିକୁ ତା'ସ୍ୱାମୀ ନେବାପାଇଁ ଆସିଲେ। ଶାଶୂ ବ୍ୟସ୍ତ ହେଲେ। କାରଣ, ବୋହୂ ଘରେ ମୋଟେ ମାସେ ରହିଛି, ସେ କଟକ ଯିବ କିପରି? ଏଣେ ମିନିର ଗୋସେଇଁ ଶାଶୂ କାନ୍ଦିବାରେ ଲାଗିଥାନ୍ତି। ନାତୁଣୀବୋହୂ ମୋର ଆସିଲା ଯେ, ମୋତେ ନିତି ଖାଇବାକୁ ଦେଉଥିଲା। ଦୁଧ ଦହିରେ ଭସାଉଥିଲା। ହଉ ଯାଉ, ବିଦେଶରେ ନୂଆ ଲୋକ କିପରି ଚଳିବ? ଶାଶୂ ପଛେ ତା'ସାଙ୍ଗରେ ଯାଉ କିଛି ଦିନ ଚଳାଇ ଆସିବ। କିନ୍ତୁ ବୋହୂ ମୋର ଘରୁ ଗଲେ ଘର ମୋର ଚଳିବ କେମିତି? ଯାହା ହେଉ ମିନି କଟକ ଗଲା। ଶାଶୂ ସାଙ୍ଗରେ ଯାଇ, ପରଦିନ ଫେରି ଆସିଲେ। ମିନି ତାର ନଣନ୍ଦକୁ ଧରି ରହିଲା। ଶ୍ୱଶୁର ଆଉ ଦୁଇଜଣ ଦିଅର ଥାଆନ୍ତି। ମିନି ରୋଷେଇ କରି ଦିନ ଦଶଟାରେ ସ୍ୱାମୀ, ଦିଅର, ଶ୍ୱଶୁରଙ୍କୁ ଖାଇବାକୁ ଦିଏ। ସେମାନେ ଚାଲିଯାଆନ୍ତି ଯେଝା କାମରେ ବାହାରକୁ। ମିନି ତାର ନଣନ୍ଦ ସହ ଖାଇ ବାସନ ମଜା ଓ ଲୁଗାପଟା ସଫାକରିବାରେ ଲାଗିପଡ଼େ। ତା'ପରେ ଘରଦ୍ୱାର ସଫା କରି ହାଲିଆରେ ଶୋଇ ପଡ଼େ। ମିନିର ନଣନ୍ଦ ଏକାକୀ ଏକର ସେକର ହୁଏ। ତାକୁ କିଛି ଭଲ ଲାଗେ ନାହିଁ। ମିନି ଉଠି ଦେଖେ ନଣନ୍ଦ କ'ଣ ରାଗିଲେ କି? ତାକୁ ପାଖକୁ ଡ଼ାକେ, ତା'ମନ କାଳେ ଖରାପ ହୋଇଥିବ ବୋଲି। ସେ ନିଜକୁ ଦୋଷୀ ପରି ଭାବେ, ଶୋଇ ପଡ଼ିଥିଲା ବୋଲି। ମାସକ ପରେ ମିନିଶାଶୂ ମିନି ବାପା ଦେଇଥିବା ଗାଈ, ବାଛୁରୀ ଧରି କଟକ ଆସିଲେ। ମିନିଶାଶୁଘରେ ଥିବା ତିନୋଟି ଦୁଧିଆଳୀ ଗାଈ ଭିତରୁ ଇଏ ଗୋଟିଏ। ମିନିଶାଶୂ ଗାଈର ସେବା କରନ୍ତି, ଖାଇବା ଠାରୁ ଆରମ୍ଭ କରି ଦୁହିଁବା ପର୍ଯ୍ୟନ୍ତ। କ୍ଷୀର ସମସ୍ତେ ଖାଆନ୍ତି। ମିନିକୁତ ଗାଈ କାମ କିଛି ଜଣା ନଥାଏ। ସେ ଖାଲି ଦୁଧ ଖାଇଜାଣେ।

ପ୍ରଥମ ବସାଘରେ ଗାଈ ରହିବା ପାଇଁ ସୁବିଧା ନଥିବାରୁ ମିନି ରହିବାର ମାସକ ପରେ ଆଉ ଗୋଟିଏ ନୂଆ ବସାଘରକୁ ଗଲେ। ସେଠାରେ ଦୁଇଟି ରୁମ୍, ଗୋଟିଏ ରୋଷେଇଘର। ଦାଣ୍ଡପଟକୁ ଢାଳିଦିଆ ବାରଣ୍ଡାଟିଏ ଥାଏ। ସେଥିରେ ତା'ର ମଉସା ଶ୍ୱଶୁର ଦୁଇମାସ କୁଣିଆ ହୋଇ ରହିଲେ। ମିନି ସ୍ୱାମୀ, ଶାଶୂ ପ୍ରଭୃତି ଅବଶିଷ୍ଟ ଦୁଇଟି ରୁମ୍‌ରେ ଚଳପ୍ରଚଳ କଲେ। ଖରାଦିନେ ବେଶି ଗରମ ହୁଏ କଟକରେ। ତା'ର ମୁଣ୍ଡ କ'ଣ ହୁଏ।

ସେ କାହାକୁ କ'ଣ କହିବ କିଛି ବୁଝିପାରେ ନାହିଁ। ଦିନରେ ଭଲ ନିଦ ହୁଏନି। ମିନିଶାଶୁ ତାଙ୍କ ଗାଁକୁ ଯିବାକୁ ବାହାରିଲେ।

ମିନି ଭାବିଲା ଏଠାରେ ଚଳିବାକୁ ତାକୁ କଷ୍ଟ ହେବ। କେମିତି ଚଳିବ? ଗାଁକୁ ଯିବାକୁ ଶାଶୁଙ୍କୁ ବାରମ୍ବାର କହିଲା। ତା ଚାରିଦିନ ଆଗରୁ ସେ ବାପାବୋଉଙ୍କ ପାଖକୁ ଯାଇଥିଲା। ତା'ର ଭାରି ଇଚ୍ଛା ହେଉଥାଏ, ପୁଣି ବାପାବୋଉଙ୍କ ପାଖକୁ ଚାଲି ଯାଆନ୍ତାକି? କିଏ ଛାଡ଼ିବ! ବାଧ ହୋଇ ଶାଶୁଙ୍କ ସାଙ୍ଗରେ ଗାଁକୁ ଗଲା। ତାକୁ ଲାଗୁଥିଲା ସେ ତା ସ୍ୱାମୀଙ୍କୁ ଭଲକରି ଚିହ୍ନିପାରୁନି କି? ତା ସ୍ୱାମୀ ମଧ୍ୟ ତାକୁ ବୁଝି ପାରୁ ନାହାନ୍ତି। ଆଉ ସେ କଟକରେ ଗରମ ସହି କେମିତି ରହିବ? ତା ମୁଣ୍ଡ କ'ଣ ହେଉଛି, ଜ୍ୱର ହେବା ଭଳି ଲାଗୁଛି। ତା'ସ୍ୱାମୀଙ୍କର ସାଙ୍ଗ ଜଣେ ବାହା ହେଲେ। ଶିକ୍ଷିତା ସ୍ତ୍ରୀ। ଗାୟିକା ମଧ୍ୟ। ତେଣୁ ମିନି ମନକୁ ଆସିଲା ଯେ, ସିଏତ ପାଠ ପଢ଼ି ନାହିଁ ବେଶି। ତା'ସ୍ୱାମୀଙ୍କୁ ବାଧୁଥିବ ଯେ ସାଙ୍ଗମାନେ ପାଠୋଇ ସ୍ତ୍ରୀ ବାହା ହେଲେ, ସେ ଏମିତିକା ସ୍ତ୍ରୀଟିଏ ବାହା ହେଲେ। ମିନି ମଧ୍ୟ ତାର ଯୋଗ୍ୟତା କମ୍ ବୋଲି ଭାବୁଥିଲା। ତେଣୁ ଶାଶୁଙ୍କର ମନ ନେଇ ତାଙ୍କ ଆଶ୍ରୟରେ କିଛିଦିନ କଟିବ କି ଏ ଜୀବନରେ କ'ଣ ସୁଯୋଗ ବା ଦୁର୍ଯୋଗ ଆସିବ ସେ ବୁଝିପାରୁ ନଥିଲା। ଜୀବନ ନଥିବା ପରି ତାକୁ ଲାଗୁଥିଲା। ଶାଶୁ ଗାଁକୁ ଗଲେ ମିନିକୁ ଧରି। ମିନିସ୍ୱାମୀ ତାଙ୍କୁ ଛାଡ଼ିଦେବାକୁ ଗଲେ। ଗାଁରେ ଦିନେ ଦୁଇଦିନ ରହି ମିନିକୁ ଗାଁରେ ଛାଡ଼ି କଟକ ଆସିଲେ। କିଛିଦିନ ପରେ ମିନିର ଶାଶୁ, ଶ୍ୱଶୁର, ନଣନ୍ଦ ଓ ଦିଅରମାନେ କଟକରେ ରହିଲେ। ମିନି ତାର ଗୋସେଇଁଶାଶୁ ବଡ଼ନଣନ୍ଦ ଓ ଛୋଟ ଦିଅର ସହ ଗାଁରେ ରହିଲା। ଗୋସେଇଁ ଶାଶୁ ଦିନେ ଦିନେ ଭାରି ଖପା ହୁଅନ୍ତି। ନଣନ୍ଦ ମଧ୍ୟ ଦିନେଦିନେ ଗର୍ଜିଉଠେ-କିଛି କାମ କରୁନାହିଁ, ଖାଲି ଶୋଉଛି। ମିନି କିଛି ବୁଝିପାରୁନି କ'ଣ ତାର ହେଉଛି? ସବୁବେଳେ ନିଦ ଲାଗୁଛି ଓ ଚିନ୍ତା ମାଡ଼ି ଆସୁଛି। ଦେହଟା କେମିତି ଲାଗୁଛି। ଖାଇବାକୁ ଇଚ୍ଛା ହେଉନି। ମୁଣ୍ଡ ବୁଲାଉଛି। ସେ ଦୋଷୀଙ୍କ ଭଳି ଉଠି ଅନେଇଁ ରହେ। କୁଆଡ଼େ ଯିବ, କ'ଣ କରିବ, କିପରି ଏ ଦିନଗୁଡ଼ାକ କାଟିବ? ମରିଯାଆନ୍ତା ହେଲେ। ମରିଯିବ ଯେବେ କାହାର କିଛି ଯିବ ନାହିଁ। ବାପାବୋଉମାନେ ତା'ର ଦୁଃଖୀ ହେବେ। ନାହିଁ ନାହିଁ ମରିବ ନାହିଁ। ବୋଉକୁ ଏ ଦୁଃଖ ଦେବ ନାହିଁ। କେତେ ଯେ ତାକୁ ତା'ର ବାପାବୋଉ ନକରିଛନ୍ତି। ବଞ୍ଚି ରହି କ'ଣ କରିବ? ଆଉ କିଛିତ ତା'ଦେଇ ହେଲାପରି ଲାଗୁନି। ତା'ହୃଦୟର ବ୍ୟଥା କିଏ ବୁଝିବ? ବାପା ବୋଉଙ୍କୁ କେବେ ଲେଖି ଜଣାଇ ନାହିଁ ମିନି। ସେମାନେ ଦୁଃଖ କରିବେ। ସେ ଚିଠି ଲେଖିଲେ ଲେଖେ ସେ ଭଲରେ

ଅଛି। ହେଲେ ଯାହା କିଛି କାମ କରିପାରୁଥିଲା ସେ ସବୁକୁ ପାରୁନାହିଁ। ବଡ଼ ନଣନ୍ଦଟି ତାକୁ ସବୁବେଳେ ସାହାଯ୍ୟ କରୁଥିଲା। ଯୋଗକୁ ସେ ନଣନ୍ଦ ହାତରେ ଢ଼ିଙ୍କି ପଡ଼ିଲା। ସେ କଟକ ଆସିଲା। ମିନି ରହିଲା ଏକାକୀ ଗୋସେଇଁ ଶାଶୁଙ୍କୁ, ସାନ ଦିଅରଙ୍କୁ ଧରି। କୂଅରୁ ପାଣି ଟାଣେ। ଭାରି ଡ଼ର ଲାଗେ। ମୁଣ୍ଡ ବୁଲେଇଲେ କୂଅରେ ପଡ଼ିଯିବ। ରୋଷେଇ କରେ। ବଗିଚା ଜଗୁଆଳିକୁ ଦିଏ। ହଳିଆ ଜଣେ ସିଏ ଖାଏ। ବୁଢ଼ୀକୁ ଯେତେ ଯତ୍ନ କରି ଦେଲେ ମଧ ବୁଢ଼ୀ ଗରଗର ହୁଏ। ରାନ୍ଧିଲେ ବୁଢ଼ୀ କହେ କାହିଁକି ରାନ୍ଧି କରି ଏତେ ଖାଇବାକୁ ଦେଉଛୁ? ହଳିଆଟାକୁ, ଜଗୁଆଳିଟାକୁ ନ ରାନ୍ଧିଲେ କହେ, ଏଇଟା ହାଣ୍ଡିରେ ତୋରାଣି ରଖୁନାହିଁ। ସାନ ଦିଅରଟିକୁ ପଚାରିଲେ ସେ କହେ, ନୂଆବୋଉ ତୁମେ ଭଲ କରି ରାନ୍ଧି ଏ ବଗିଚା ଜଗୁଆଳିକୁ ହଳିଆକୁ ଖାଇବାକୁ ଦିଅ। ରାତିରେ ଡ଼ାଲି କର; ଘରେ ତ ମୁଗ ଅଛି ନହେଲେ, ସେମାନେ ନିନ୍ଦା ଦେବେ ତୁମକୁ। ମିନି ରାତିରେ ଡ଼ାଲି କରେ। ବୁଢ଼ୀ କହନ୍ତି— ଆଲୋ, ମୋର ଘର ସାରିବୁ ନାଁ କ'ଣ? ନିତି ଡ଼ାଲି ରାନ୍ଧୁଛୁ ଯେ? ଏ ହଳିଆଙ୍କୁ ଖାଇବାକୁ ଦେଉଛୁ। ପୁଅ ବୋଉ ମୋର ଘରେ ନାହାନ୍ତି। ଏଇଟା ତ ହୁଣ୍ଡୀଟା, ସବୁ ମୁଗ ସାରିଲାଣି। ପୁଣି ବୁଢ଼ୀ କହେ, ଆଲୋ ଏ ଛୁଆ ବୋଉ, କ'ଣ ରାନ୍ଧୁଛୁ? ମିନି ଡ଼ରିଯାଏ। କିଛି ତା'ପାଟିରୁ କଥା ବାହାରେ ନାହିଁ। ସେ କିଛି ଖାଇପାରେ ନାହିଁ। ଯାହା ଖାଇବାକୁ ଯାଏ ସବୁ ଗନ୍ଧ ହୁଏ। ଏ ବୁଢ଼ୀ ପାଖରେ ସେ ଚଳିବ କିପରି? ତାକୁ ସବୁ ଅନ୍ଧାର ଦିଶେ। ବୁଢ଼ୀ ଖାଇ ପିଇ ଘୁଙ୍ଗୁଡ଼ି ମାରନ୍ତି। ମିନି କ'ଣ କରିବ? ଯେତିକି ମୂଷା ଗାତ ଥାଏ ତାକୁ ମାଟି ଦିଏ। ଛାଞ୍ଚୁଣିଟାଏ ଧରି ଘରର କାନ୍ଥର ଅଳିଆ ସଫା କରେ। ମନଟା କୋହମୋହ ହୁଏ। କ'ଣ ଥିଲା, କ'ଣ ହେଉଛି ଏବେ ସେ। ତା'କଥା କେହି ବୁଝିବେ ନାହିଁ। ମିନିକୁ ଖାଲି କାନ୍ଦ ଲାଗୁଥାଏ। ଭୋକ ଶୋଷ ହୁଏନାହିଁ। ଏହିପରି ଦୁଇମାସ କଟିଗଲା। ସେ ଦୁଇମାସ କେତେ ଯୁଗ ଅବା ଲାଗିଛି କେଜାଣି। ବେଳେବେଳେ ବୁଢ଼ୀ ପାଖକୁ ଡ଼ାକନ୍ତି। କ'ଣ ହେଲା ଲୋ ଛୁଆ ବୋଉ - ଆସିଲୁ ଆ। ଏ ପିଳୁକି କଷିଟା ଚୋବାଇ କାଢ଼ିପକା, ପାଟି ଭଲ ଲାଗିବ। ତୋରି ଏଇ ଯଉତୁକ ପେଡ଼ିରେ ମୁଁ ସାଇତିଛି ଲୋ। ତୁ ଚୋବେଇବୁ। ମିନି ବାରିଆଡ଼େ ଗଲେ ବୁଢ଼ୀ ବାରିକି ଯାଇ ଜଗି ବସନ୍ତି। ଡ଼ରିବୁ ନାଇଁ ଲୋ ଛୁଆ ବୋଉ, ମୁଁ ଏଇଠି ବଇଛି ପରା। ମିନି ତ ଭାରି ଡ଼ରେଇ ଥିଲା। ଅନ୍ଧାର ଘରକୁ ଭାରି ଡ଼ରୁଥିଲା। କିମିତି ଏଡ଼େ ବଡ଼ ଘର ଭିତରେ ଚଳିବ? ବାରିକୁ ଆଉ ବାହାରେ ନାହିଁ। ଶଅର ଝିଅଟିଏ ମିନି ପାଖରେ ଶୁଏ। ମିନି ଖଟ ଉପରେ ଶୁଏ। ସେ ତଳେ ଶୁଏ। ସକାଳୁ ଉଠିପଡ଼ି ବାସନ ମଜା ଓ ଘରଦ୍ୱାର ଖରକା ପହଁରା

କରେ। ମିନିକୁ ଗାଧୋଇବାକୁ ପାଣି ଦିଏ। ବାହାରକୁ ପାଣି କାଢ଼ିଦିଏ। ମିନି ରୋଷେଇ ପାଇଁ ନିଜେ ପାଣି ଟାଣି ଆଣେ। ମିନି ବୁଢ଼ୀଙ୍କର ଗୋଡ଼ ଘଷିଦିଏ। ବୁଢ଼ୀ କହନ୍ତି,— ଆଲୋ ଏଟାକୁ ତ କିଛି ଆସୁନାହିଁ। କି ଘଷା ଘଷୁଛି, ହଉ ଯାମ ଯା...। ବେଳେବେଳେ ନିଜେ ମିନିକୁ ଅଣ୍ଡାଳି ପକାଇ



କହନ୍ତି, ଆଲୋ ଏ କ'ଣ? ମୋ ବୋହୂତ କ'ଣ ଏମିତି ରହି ଗଲାଣି। ଆଲୋ ତୁ କ'ଣ ଖାଉନୁ ନା କ'ଣ କିଲୋ! ବୁଢ଼ୀର ଏ କଥାରେ ମିନିର ମନ ଟିକେ ଶାନ୍ତ ହୁଏ। ଶାଶୁ ତାଙ୍କ ପୁଅ ଝିଅକୁ ଧରି କଟକରେ ରହିଲେ। କିନ୍ତୁ ମିନି କ'ଣ ଖାଇବ! ତାକୁ ତ ଭାତ ଗନ୍ଧ ହଉଛି। ମିନି ଦେଖିଲା କୋଠି ତଳେ ମାଣ୍ଡିଆ ଅଛି। ସେ ବୁଢ଼ୀକୁ କହିଲା, ମା! ଏଠି କ'ଣ ଗଣ୍ଡେ ମାଣ୍ଡିଆ ଅଛି? ବୁଢ଼ୀର ଆଖିକୁ ତ ଦିଶେ ନାହିଁ, ସତେ ଲୋ ବୋହୂ ମାଣ୍ଡିଆ ଅଛି? ତୁ ତ କିଛି ଖାଉନୁ; ମାଣ୍ଡିଆ ଯାଉ କରୁନୁ, ତୁ ଖାଇବୁ ଆଉ ତୋ ସାନ ଦିଅର ଖାଇବ! ଆଣେ, ଖରାରେ ଶୁଖାଇ ଫେଷିବା। ବୁଢ଼ୀ ନିଜେ ମିନି ସାଙ୍ଗରେ ମାଣ୍ଡିଆ ଫେଷିଲେ। ମିନି ନିତି ଟିକିଏ ମାଣ୍ଡିଆ ଯାଉ କରେ। ବୁଢ଼ୀ ପାଖରେ ବସି ବତାଇ ଦିଅନ୍ତି। ସକାଳୁ ମିନି ଗାଧୋଇ ଆସି ସଜନାଶାଗ ଭାଜେ। ପଦିକୁ ଖାଇବାକୁ ଦିଏ। ବୁଢ଼ୀ ଏଣେ ପାଟି କରନ୍ତି, ଆଲେ ଏ ଛୁଆ ବୋଉ! ଖାଇଲୁଣି ନା? ମାଣ୍ଡିଆ ଯାଉ କରିଛୁ ପରା। ସଜନାଶାଗ ଭାଜିଛୁ ପରା। ବକଟେ ଆଣି ଖାଇଦେ। ମିନି ହଁ ମାରିଦିଏ। ଥରେ ତ ଖାଇଲେ ଚଳିବ ତରବର କାହିଁକି?



ମିନି ଚାରିଆଡ଼ ଖୋଜି ବୁଲେ କ'ଣ ଲଗାଇ କ'ଣ ଖାଇବ। ଚାରିଆଡ଼େ ଖୋଜି ବୁଲେ ଆମ୍ବୁଲ ଟିକିଏ ପାଇଁ। ଆମ୍ବୁଲ ଟିକିଏ ମାଠିଆରୁ ଆଣେ। ବାରିକୁ ଯିବାକୁ ଲାଜ ମାଡ଼େ। ଶଅର ସାହିର ସମସ୍ତେ ଅନେଇଲେ ଲାଜ ମାଡ଼ିବ। ତେଣୁ ସାନ ଦିଅର କେତେବେଳେ ଆସିଲେ ଲଙ୍କା ଗୋଟିଏ ଦେଲେ, ସେ ଖାଇବ। ମିନି ସେମିତି ଏକର ସେକର ହେଉଥାଏ। ଦିଅରଟି ଆସିଲେ କହେ, ଗଛରୁ ଗୋଟେ ଲଙ୍କା ଦବଟି। କଞ୍ଚା ଲଙ୍କାଟିଏ ଗଛରୁ ଦେଲେ, ସେ ଆସି ଖାଏ। ମିନି ଭାବୁଥାଏ କାନ୍ଦୁଥାଏ, "ବୋଉ କେତେ ରକମର ଆଣି ଖା-ଖା-ବୋଲି କହିଲେ ମଧ ଖାଉ ନଥିଲି। ଆଜି ଏଇୟା ହେବାକୁ କପାଳରେ ଥିଲା। ଶାଶୁ ଘର ଯମ ଦୁଆର। ଆଉ ଜୀବନରେ କ'ଣ କେବେ ବୋଉ ପାଖକୁ ଯିବି ନାହିଁ? ଆଉ ସେ ଖାଇବା ଜିନିଷ ପାଇବି ନାହିଁ!" ଏମିତି ମନେ ମନେ ଝୁରୁଥାଏ। ଖରା ଦିନ, ଏହିପରି ଯନ୍ତ୍ରଣାରେ, ମାସରୁ ବେଶି କଟାଇଲା ବୁଢ଼ୀଙ୍କ ପାଖରେ। ସ୍ୱାମୀ ତାର ପୁନାରୁ କଟକକୁ ଆସିବା ଶୁଣିଲା। ସେ ଚିଠି ଲେଖିଲା, ତା'ବୋଉ ପାଖକୁ ଯିବ। ତାକୁ ଜ୍ୱର ଜ୍ୱର ଲାଗୁଛି। ଦେହ ଭଲ ଲାଗୁ ନାହିଁ। ଶାଶୁଙ୍କୁ ମଧ ଲେଖିଲା। ଶାଶୁ ତାର ରାଗି ଉଠିଲେ। ଶ୍ୱଶୁରଙ୍କୁ ପଠାଇ କଟକ ଆଣିବାକୁ କହିଲେ। ଶ୍ୱଶୁର ଯାଇ ବୁଢ଼ୀକୁ ପଚାରିଲେ, ଆଲୋ ବୋଉ, ବୋହୂଙ୍କ ଦେହ ଭଲ ଅଛି ତ? ବୁଢ଼ୀ କହିଲେ, ହଁ ଭଲ ଅଛି। କିଏ କ'ଣ କହିଲା କି? ବୋହୂ ଚିଠି ଲେଖିଥିଲେ ତାକୁ କୁଆଡ଼େ ଜ୍ୱର ହେଉଛି।

''ନାଁ'ମ, ଆଲୋ ! ଏ ଛୁଆବୋଉ, ତୁ ମୋ ନାତି କତିକି କ'ଣ ଲେଖିଲୁ କିଲୋ ତୋତେ କୁଆଡ଼େ ଜ୍ୱର ହେଉଛି।'' ମିନି ବିଚାରି ଲାଜୁରୀ ହେଲା। ବୁଢ଼ୀ ଏଇନା କେତେ କଥା କହିବେ। ଗାଳି ଦେବେ। ସେ କ'ଣ କରିବ ? ସେ ମନା କଲା। କହିଲା, ଦିନେ ମୋତେ ଜ୍ୱର ହେଲାପରି ଲାଗୁଥିଲା ବୋଲି ଲେଖିଥିଲି। ଶ୍ୱଶୁର କହିଲେ, ଯାହା ହଉ ବୋହୂ ଯିବେ କଟକ। ବୁଢ଼ୀ ଛାନିଆ ହୋଇଗଲେ। ବୁଢ଼ୀ ସିନା ମିନି ଉପରେ ବେଳେବେଳେ ବିଗୁଡୁଥିଲେ। ଏଇନା ଛୁଆ ବୋଉ ଗଲେ ବୁଢ଼ୀ ଚଳିବେ କିପରି ? ବୁଢ଼ୀଙ୍କ ଆଖିରୁ ଧାରା ଶ୍ରାବଣ ବହିଲା। ସଭିଏଁ ଯାଇ କଟକରେ ରହିଲ, ଶେଷକୁ ଏ ବୋହୂଟାକୁ ମଧ ନେଇ ଯିବ। ବୁଢ଼ୀ କାନ୍ଦିବାରୁ ମିନି ଡ଼ରୁଥିଲା। ବୁଢ଼ୀ କାନ୍ଦିଲେଣି। ଅସନ୍ତୁଷ୍ଟ ହେଲେଣି। ସେ କ'ଣ କରିବ। ସେ କହିଲା ତାଙ୍କ ଗାଁକୁ ଯିବାକୁ ଭାବୁଛି। ଶ୍ୱଶୁରଙ୍କ ସଙ୍ଗେ ମିନି କଟକ ଗଲା।

— ୧୨ —

ମିନି ଡ଼ାକ୍ତରଖାନାରେ ଛଅ ଘଣ୍ଟା କାଳ କଷ୍ଟପାଇବା ପରେ ପୁଅଟିଏ ଜନ୍ମ କଲା। ଚିତ୍କାର କରି କରି ଶୀତ ଦିନେ ମଧ ତା ତଣ୍ଟିଟା ଶୁଖି ଯାଉଥିଲା। ନର୍ସ କହିଲେ, ପୁଅଟିଏ। ପୁଅଟି ଜନ୍ମ ପରେ କାନ୍ଦି ନଥିବାରୁ ମିନିର ସନ୍ଦେହ ହେଲା। ମିନି ପଚାରିଲା, ମଲା ଛୁଆଟା କି ? ନର୍ସ କହିଲେ,



ନାଁ। ମିନି ତା'ପରେ କହିଲା, ଓଃ! ଭାରି ପୁଅଟେ ହେଇଛି ଯେ, ଏତେ କଷ୍ଟ ଦେଲାଣି। ନର୍ସ କହିଲେ, ଆଚ୍ଛା। ତାହାହେଲେ ତୁମର ପୁଅ ଦରକାର ନାହିଁ। ମିନି ଆଉ କିଛି କହିପାରିଲା ନାହିଁ। ଚୁପ୍ ରହିଲା। ପୁଅକୁ ଅଲଗା ଯାଗାକୁ ନେଲେ। ମାଆକୁ ତା ବେଡ୍‌କୁ ନେଲେ। ମିନି ତା'ପେଟରେ ଖୁବ୍ ଯନ୍ତ୍ରଣା ଅନୁଭବ କରୁଥାଏ। ତଥାପି ପୁଅକୁ କେତେବେଳେ ତା ପାଖକୁ ଦେବେ ଅନାଇଁଥାଏ। ସେଦିନ ମାଘମାସର ସୋମବାର ନବମୀ, ସୋମବାର ନଅଟା କୋଡ଼ିଏ ମିନିଟ୍। ପ୍ରସବ ପୂର୍ବରୁ ଡ଼ାକ୍ତର କହିଥିଲେ ନଅଟା କୋଡ଼ିଏରେ ହବ। ପୁଅକୁ ଅନାଇଁ ଅନାଇଁ ତିନିଘଣ୍ଟା ବିତିଗଲା। ସବୁରି ବେଡ୍‌ରେ ଦେଖୁଛି ମିନି, ମା'ମାନଙ୍କ ପାଖରେ ଛୁଆ ପହଞ୍ଚିଗଲାଣି। ତା'ଛୁଆ ଏ ପର୍ଯ୍ୟନ୍ତ ପହଞ୍ଚିପାରିନି। ତା ମନ ବେଳକୁ ବେଳ ବ୍ୟାକୁଳ ହେବାକୁ ଲାଗିଥାଏ। ସେ ଏକୁଟିଆ ନିରାଶ ହତାଶ ହୋଇ ବେଡ୍‌ରେ ପଡ଼ିଥାଏ। କିଏ ନିଜର ଲୋକ ପାଖରେ ନାହାନ୍ତି। ଗଲା ରବିବାର ଦିନସାରା ରାତିସାରା ଆଖିରେ ପଲକ ପଡ଼ିନି। ନିଶ୍ଚିନ୍ତରେ ଟିକିଏ ଶୋଇପଡ଼ନ୍ତା ହେଲେ! ମାତ୍ର ତେଣେ ଛୁଆପାଖରେ ମନରହିଛି। ଏପରି ଡ଼ାକ୍ତରଖାନାରେ ରହିବା ମିନିର ପ୍ରଥମ। ବୋକୀଙ୍କ ପରି ସବୁରି ମୁହଁକୁ ବଲବଲକରି ଚାହିଁଥାଏ। ଦିନ ବାରଟା ବେଳେ ଶାଶୂ ତା'ର ଦୁଧ ଧରି ପହଞ୍ଚିଲେ। ପୁଅକୁ ଏ ପର୍ଯ୍ୟନ୍ତ ଦେଇନାହାନ୍ତି, ଶାଶୂ ପଚାରିଲେ। ମିନି ଦୁଧ ପିଇଲା। ତା ସ୍ୱାମୀ ଆସି ପହଞ୍ଚିଲେ। କହିଲେ, ପୁଅକୁ ଦେବେ, ବ୍ୟସ୍ତ ହୁଅନି। ଦିନ ତିନିଟା ବେଳେ ପୁଅ ପାଖକୁଆସିଲା। ପାଣି ଟିକିଏ ନାହିଁ। କାହାକୁ ଜଣକୁ କହି ପାଣି ମଗାଇ ପୁଅକୁ ପିଆଇଲା। ହେଲେ କାନ୍ଦ ତାର ବହୁତ। ମିନି ଆଉ ଶୋଇବ କ'ଣ, ପୁଅକୁ ଧରି ବସିଛି। ଅନେକ ପଡ଼ୋଶୀ ବେଡ୍‌ର ମହିଳାମାନେ କାନ୍ଦ ଶୁଣି ବ୍ୟସ୍ତ ହୋଇପଡୁଥାନ୍ତି। ରାତିସାରା ଅନବରତ କାନ୍ଦୁଛି। ମିନି ବହୁତ ବ୍ୟସ୍ତ। ମନେମନେ ଭାବୁଛି, ରାତିସାରା ଧରି ବସିଛି। ଖୁଆଇବାକୁ ଜାଣିନି, ତାକୁ ଲାଜ ମାଡୁଛି। ଦ୍ୱିତୀୟ ଦିନ କାନ୍ଦ ଟିକେ କମିଛି। ଡ଼ାକ୍ତରଖାନାରୁ ପାଉଁରୁଟି ବା ଦୁଧ ଯାହା ମିଳେ ମିନିକୁ କିଛି ଭଲ ଲାଗେନା। ସେମିତି ଥୁଆ ହୋଇଥାଏ। କିଛି ଖାଏନି। ଦ୍ୱିତୀୟ ଦିନ ଯଥା ତଥା ଚଳିଗଲା। ତୃତୀୟ ଦିନ ଘରକୁ ଆସିବାକୁ ହବ ସେ କଥା ମିନିକୁ ଆଦୌ ଜଣା ନାହିଁ। ସବୁ ରୋଗୀଙ୍କ ପରି ମିନି ମଧ ଛୁଆକୁ ନେଇ ଶୋଇଛି।

ତୃତୀୟ ଦିନ ଦଶଟା ବେଳେ ଅନ୍ୟ ରୋଗୀ ଧରି ପାଖରେ ଠିଆ ହେଲେଣି। ତୃତୀୟ ଦିନ ପ୍ରସୂତିମାନେ ଘରକୁ ଯିବେ। ବେଡ୍‌ରୁ ଉଠ ଉଠ କହୁଛନ୍ତି। କେହି ଉଠୁନାହାଁନ୍ତି। ସମସ୍ତେ କହୁଛନ୍ତି ଆମର ମଣିଷ ଆସିନାହାନ୍ତି। ମିନିକୁ ଉଠିବାକୁ କହିଲେ, ତୁମର ତ ତୃତୀୟ ଦିନ। ବେଡ୍ ଛାଡ଼ିବାକୁ

ହେବ। ମିନି ଆଉ କିଛି ନକହି ଉଠି ଠିଆହେଲା। କନା ଲୁଗା ପଟା ବେଡ଼୍‌ରୁ ନେଇଆସି ତଳେ ବିଛଣାକରି ପୁଅକୁ ଶୁଆଇ ଦେଲା। ନିଜେ ବସିଲା। ଅନ୍ୟମାନେ ଖଟ ଉପରେ ଶୋଇ ଚାହିଁଥାନ୍ତି। ମିନିକୁ କ'ଣ ଲାଗୁଥାଏ। କୁଆଡ଼େ ଯିବ ସେ। ଏପର୍ଯ୍ୟନ୍ତ କେହି ଆସିଲେନାହିଁ। ହାଡ଼ିଆଣୀଟା ମଇଳା ଲୁଗାପଟା ସଫା କରିବାକୁ ନେଇଛି। ପୁଅକୁ ଏକା ଶୁଆଇ ଦେଇ ହାଡ଼ିଆଣୀକୁ ଭେଟି କହିଲା, ଲୁଗାପଟା ଶୁଖାଇଦେଇ ଆ। ହାଡ଼ିଆଣୀ କହିଲା, ଟଙ୍କା ଦବଟି। ମିନି ହଁ କହିଲା। ପୁଅ ପାଖକୁ ଆସି ବସିଲା। ନରିବାବୁ ଜଣେ ଭଦ୍ର ଲୋକ। ସେ ପୁଅକୁ ଦେଖିବାକୁ ଆସିଥିଲେ। କହିଲେ ଆରେ! ତଳେ ବସିଛ ଯେ, ଘରୁ କେହି ଆସି ନାହାନ୍ତି, ଯିବ କେମିତି? ଆଉ ଜଣେ ଭଦ୍ର ପରିଚିତା ମହିଳା ତାଙ୍କ ଝିଅକୁ ଧରି ପହଞ୍ଚିଲେ ଦେଖିବାକୁ। ଆରେ ତୁ ଏଠି ବସିଛୁନାଁ! ଆଉ ଘରକୁ ଯିବୁନା! ରିକ୍ସା ଡ଼ାକିବିକି? ମିନି ହଁ କଲା। ରିକ୍ସାରେ ବସାକୁ ଆସିଲେ। ମିନିସ୍ୱାମୀ ଡ଼ାକ୍ତରଖାନା ଯାଇ ମିନିକୁ ଖୋଜୁଛନ୍ତି। ମିନି ତ ନାହିଁ, କୁଆଡ଼େ ଗଲା। ସେ ଘରକୁ ଗଲାଣି ବୋଧ ହୁଏ। ଶେଷରେ ଘରକୁ ଫେରିଲେ।

ଦିନେ ସଞ୍ଜରେ ଜଣେ ବ୍ରାହ୍ମଣୀ ଦେଖିବାକୁ ଆସିଲେ। ପୁଅକୁ ଦେଖିଲେ। କହିଲେ, ପ୍ରଥମ ପୁଅ ଭଲ ହେଇଛିତ, ଭଲ ସ୍ୱାସ୍ଥ୍ୟ ହେଇଛି। ତା'ପରଠାରୁ ପୁଅ କାନ୍ଦିବାରେ ଲାଗିଲା। ଶାଶୁ ତାର ଥିଲେ। କହିଲେ ହଁ ଏଇଥିଲାଗି ତ ଛୁଆ ମୋର ଏତେ କାନ୍ଦିଲା କିଏ ମ ସେ ଡ଼ାଆଣୀ ଦିଟା ଆସି ଏଇମିତି କରି କହିଲେ। ପୁଅ ଯେମିତି ହେଲେ ବେଶି କାନ୍ଦିଲା। କିଛି ଦିନ ପରେ ଗାଁରୁ ଶ୍ୱଶୁର ଆସିଲେ, ସେ ଧରି ଝୁଲାଇଲେ। ଶ୍ୱଶୁର କହିଲେ ଏଠାରେ ଆମେ ମା'ପୁଅଙ୍କୁ ରଖିବା ନାହିଁ, ଗାଁକୁ ନେଇଯିବା। ନାତି ଗରମକୁ କାନ୍ଦୁଛି, ଗାଁରେ ଥଣ୍ଡା ଲାଗିବ। ମାଟି ଘର, ଏଠିତ ସିମେଣ୍ଟ, ତାତିକୁ ଘର ତାତି ଯାଉଛି। ଠିକ୍ ପୁଅକୁ ପନ୍ଦର ଦିନ ହେଇଛି, ଗାଁକୁ ଯିବାକୁ ବାହାରିଲେ। ରାତି ଚାରିଟାବେଳକୁ ସମସ୍ତେ ତିଆରି ହେଲେ। ସେ ରାତିଟା ପୁଅ କେମିତି ଶୋଇପଡ଼ିଥାଏ। ଉଠିକରି ଶାଶୁ ଶ୍ୱଶୁର ପୁଅ ବୋହୂ ନାତି ଟ୍ରେନ୍‌ରେ ଗଲେ।

ତାଙ୍କ ଷ୍ଟେସନ୍‌ରେ ଗାଡ଼ି ଅଳ୍ପ ସମୟ ରହିବ। ଦୁଇ ମିନିଟ୍ ବା ତିନି ମିନିଟ୍। ଶୀଘ୍ର କେମିତି ଓହ୍ଲାଇବ ଭାବୁଥିଲେ ମଧ୍ୟ ଆଗକୁ ଗୁଡ଼ାଏ ଲୋକ, କ'ଣ ବସ୍ତା ବୁଜୁଳି ଗୁଡ଼ାଏ। ଶାଶୁ ଶ୍ୱଶୁର ଓହ୍ଲାଇ ଗଲେ। ମିନିତ ଛୋଟ ଛୁଆଟି ଧରିଛି, ଆଉ ଓହ୍ଲାଇ ପାରୁନାହିଁ। ମିନିର ସ୍ୱାମୀ ଚେନ୍ ଟାଣିଲେ। ଟ୍ରେନ୍ ଅଟକିଲା ବି। ବହୁତ ଲୋକ ଏପଟେ ସେପଟେ ଥାନ୍ତି ଷ୍ଟେସନ୍ ମାଷ୍ଟର ପାଟି କରୁଥାଏ, ଆଗରୁ ପ୍ରସ୍ତୁତ ହୋଇ ଓହ୍ଲାଇ ପାରୁନ?

ଜାଣୁଛତ ଗାଡ଼ି ଏତିକି ସମୟ ରହୁଛି! କି ଅସମ୍ଭବ କଥା। ଆଗରେ ଲୋକ ଗୁଡ଼ାକ ବାଟ ବନ୍ଦକରି ବସିଛନ୍ତି। ସେମାନେ ଆଗେ ଯାଉଛନ୍ତି। ଆମର କ'ଣ ଅପରାଧ ଯେ ଚେନ୍ ଟାଣିବୁ ନାହିଁ କ'ଣ କରିବୁ?



ଷ୍ଟେସନ୍‌ରେ ଓହ୍ଲେଇଲା ବେଳକୁ ରାତି ପାହି ଆସୁଛି। ଗାଁରୁ ଦିଅର ଶଗଡ଼ଗାଡ଼ି ଧରିଆସି ଜମିଦାରଘରୁ ଦିଟା ବଡ଼ ବଳଦ ଯୋଚି ନିଜେ ଅଡ଼ାଇ ଆଣିଛନ୍ତି। ଆଉ ଗୋଟେ ଶଗଡ଼ ଧରି ଜଣେ ହଳିଆ ଆସିଥାଏ। ତହିଁରେ ଶାଶୁ ଶ୍ୱଶୁର ସାନନଣନ୍ଦ ବସିଲେ। ବଡ଼ବଳଦ ଗାଡ଼ିରେ ମିନି ଓ ତା'ପୁଅ ବସିଲେ। ଦିଅର ଶୀଘ୍ର ଶୀଘ୍ର ବଳଦ ଅଡ଼େଇଦେଲେ ଗାଁପାଖକୁ। ମିନି ସ୍ୱାମୀ କଟକ ଫେରିଗଲେ ଏମାନଙ୍କୁ ଗାଡ଼ିରେ ବସାଇ ଦେଇ। ମିନି ଡ଼ରୁଥାଏ। ଏତେ ଛୋଟପିଲା ଶଗଡ଼ଗାଡ଼ିରେ ଏତେବାଟ ଗଲାପରେ ଦେହ ଦରଜ ହେଇଯିବ। ଗାଁରେ ପହଞ୍ଚିଗଲେ। ସାନଦିଅର ଗେଟ ପାଖରେ ଠିଆହେଇଥିଲେ। କିଏଜଣେ ପଚାରିଲା, ପୁଅ ନା ଝିଅ? ଦିଅର କହିଲେ ପୁଅ। ମିନି ଘରକୁ ଗଲା। ଗୋସେଇଁଶାଶୁଙ୍କୁ ମୁଣ୍ଡିଆ ମାଇଲା, ତାଙ୍କରି କୋଳରେ ପୁଅକୁ ଦେଲା। ବୁଢ଼ୀ ଅଣନାତିକୁ ଧରି କହିଲେ, ଏ ଛୁଆବୋଉ, ମୋ ନାତିକି ଘୋଡେଇ ଦେଏ। ଧରି, ଗେଇ କରିସାରି କହିଲେ, ନେ ନେ, ତାକୁ ଖାଇବାକୁଦେଇ ଶୁଆଇ ପକା। ଶାଶୁ ନାତିଲାଗି ବିଛଣା କରିଦେଲେ। ମିନି ତା'ପୁଅର ମୂତ କନା ଧରି ଧୋଇବାକୁ କୂଅ ପାଖକୁ ଗଲା। ପଡିଶା ଘର ଶଥର

ବୋହୂଟି ମିନିକୁ ବୋହୂ ବୋଲି କହେ, ପୁଅକୁ ନାତି ବୋଲି କହେ। କହିଲା, ପୁଅ କଅଣ ଏତେ ମୃତି ପକାଇଲା। ମିନି କିଛି କହିଲାନାହିଁ। କନା ସବୁ ଧୋଇ ଆଣିଲା।

ମାଟିଘର, ଚାଳଘର ଗାଁରେ। ଆମ୍ବ, ପଣସ, ପିଜୁଳି ଗଛ ଘର ଚାରିକରେ ଥାଏ। ପବନ ହଉଥାଏ। ପୁଅ ଆରାମରେ ଶୋଇଲା। ମିନି ଠିକ୍ ସମୟରେ ତାକୁ କ୍ଷୀର ଖୁଆଇଦିଏ। ଶ୍ୱଶୁର କହନ୍ତି ନାତି ମୋର ଚ଼ନ୍ଦ୍ରକଳା ପରି ବଢ଼ିବ। ଶାଶୁ ଠିକ ସମୟରେ ପୁଅକୁ ଗାଧୋଇ ଦିଅନ୍ତି। ହଳଦୀ ଲଗାଇ ଦିଅନ୍ତି। ଗୋସେଇଁ ଶାଶୁଙ୍କକୋଳରେ ଦିନେ ଦିନେ ମିନି ନେଇ ତା ପୁଅକୁ ଦିଏ। ବୁଢୀଗୀତ ଗାଆନ୍ତି, "ହାତୀ ବେଇଚନ୍ତି ମଶାଲୋ.....".

ଦିନେ ସେ ଗାଁର ଜଣେ ସାଆନ୍ତଘର ଲୋକେ ମିନିକୁ ତା ପୁଅକୁ ଦେଖିବାକୁ ଆସିଲେ। ମା ଝିଅ ବୋହୂ ଏମିତି। ମିନି ପୁଅକୁ ଶୁଆଇଥିଲା।ଶାଶୁ କାହା ଘରକୁ ଯାଇଥାନ୍ତି। ପୁଅ କାନ୍ଦିଲା। ମିନି ଗୋସେଇଁଶାଶୁ କହିଲେ, ଆଲୋ ଏ ଛୁଆବୋଉ, ତାକୁ ବକଟେ ଖାଇବାକୁ ଦେ, କାନ୍ଦୁଛି ପରାଲୋ। ମିନି ତ ନୂଆ ମଣିଷ, କାହାରିକୁ ଭଲକରି ଚିହ୍ନିନାହିଁ, କାହାକୁ ବସିବାକୁ କହୁନାହିଁ। ସେମାନେ ପୁଅ କାନ୍ଦଣା, ବୁଢୀର ଏକଥା ଶୁଣି ହସୁଛନ୍ତି। ତାଙ୍କୁ ସବୁ ମଜା ଲାଗୁଛି। ଗୋସେଇଁଶାଶୁ କହିଲେ, ଆଲୋ ମା, ତାଙ୍କୁସବୁ ବସିବାକୁ ସପ ପକାଇ ଦେ। ପିଲାଟାତ ଭଲକରି ଖାଇଲେ ଶୋଇବ। ମିନିକୁ ତ ଲାଜ ମାଡୁଛି, ପୁଅ କାନ୍ଦୁଛି। ନଣନ୍ଦ ସେମାନଙ୍କୁ ବସାଇଲେ, ପାନ ଦେଲେ। ସେମାନେ ଗଲାପରେ ମିନି ଆଶ୍ୱସ୍ତ ହେଲା।

ପୁଅ ଦି'ମାସର ହେଲା। ମିନିର ଆଣ୍ଠୁ ଫୁଲିଲା। ଘରଦୁଆର କାମ,ସକାଳୁ ଗାଧୋଇବା, ବେଳେବେଳେ କୂଅରୁ ପାଣି କାଢିବା। ମିନିର ମନ ଲାଗେନି। ଚାଲିବା ବୁଲିବା କାମଦାମ କରିବା ବଡ଼ ଅଡୁଆ ଲାଗୁଥାଏ। କଷ୍ଟହେଲେ କାନ୍ଦେ। କ'ଣ କିପରି ଭଲହେବ ସେ କିଛି ଭାବିପାରେନି। ଶ୍ୱଶୁର ଅନେକ କବିରାଜୀ ଔଷଧ କଲେ। ହୋମିଓପାଥି ମଧ୍ୟ ଦେଉଥାନ୍ତି। ସେଥିରେ କିଛି ହେଲାନି। ସାମାନ୍ୟ ଉପଶମ ହୁଏ, ମାତ୍ର ସବୁବେଳେ ଛୋଟୀଙ୍କ ପରି ଚାଲେ।ସେ ଭାବେ ଆଉ ଭଲହେବନି। ଏଇମିତି ଛମାସ କଟିଗଲା। ଭଲମଧ୍ୟ ବେଳେବେଳେ ହେଇଯାଏ। ମିନିପୁଅର ବାପ ଚାଲିଲେ ଉଜ୍ଜୟିନୀ, ଗୋଟିଏ ଟ୍ରେନିଂରେ। ବର୍ଷକରୁ ବେଶି ରହିଲେ।

— ୧୩ —

ମିନି ପୁଅକୁ ବର୍ଷପୂରାଣି ବେଳକୁ ମିନିର ଭାଇ ମିନିକୁ ନେବା ପାଇଁ ଆସିଥିଲା। ପୁଅକୁ ବହୁତ ଜର ହୋଇଥାଏ। ମିଳିମିଳା। ପୁଅର ଏ ଅବସ୍ଥା

ଦେଖି ଫେରିଗଲା। ଆଉ ଦୁଇମାସ ପରେ ମିନିବାପା ମିନିକୁ ଆଣିବାକୁ ଆସିଲେ। ମିନି ଯିବ ବୋଲି ସବୁ ଠିକଠାକ୍. ହେଲା। ପିଉସୀଶାଶୁ ମଧ୍ୟ ଥାନ୍ତି । ଗୋସେଇଁଶାଶୁ ଥାନ୍ତି। ଶାଶୁ ଶ୍ୱଶୁର ଏମାନଙ୍କ କାହାରି ଇଚ୍ଛା ନଥାଏ ପଠାଇବାକୁ। ସେ କିପରି ଯିବ ବ୍ୟସ୍ତ ହଉଥାଏ।ସକାଳୁ ଯିବ। ରାତିରେ ସବୁ ଠିକଠାକ୍ ହେଲା। ସମସ୍ତେ ଖିଆପିଆ କରି ଶୋଇଲେ। କିନ୍ତୁ ଦିଅର ଖାଇ ନଥାନ୍ତି। ତେଣୁ ମିନି ଓ ତାର ନଣନ୍ଦ ଖାଇବାକୁ ଦବାକୁ ଜଗିଥାନ୍ତି। ମିନିକୁ ଟିକେ ନିଦ ଲାଗିଯାଇଥାଏ। ତା ନଣନ୍ଦ ତାକୁ ଡାକିଲା,ନୂଆବୋଉ ଆସ, ଭାଇ ଡ଼ାକୁଛନ୍ତି। ମିନି ନିଦରୁ ଉଠି ଗଲା। ଦିଅର କହିଲେ, ଦେଖିଲ ନୂଆବୋଉ ମୋତେ ଗୋଟେ ସାପ କାମୁଡିଦେଲା। ମୁଁ ବ୍ଲେଡ଼ରେ ଚିରି ଦେଇଛି କ୍ଷତ ଯାଗାକୁ। ମିନି ଏକୁଟିଆ କ'ଣ କରିବ, ତଟସ୍ଥ ହେଇ ଚାହିଁଦେଖିଲା। ଶ୍ୱଶୁରଙ୍କୁ ଉଠାଇଲା। ଡ଼ାକହାକରେ ଘରେ ସମସ୍ତେ ଉଠିପଡ଼ିଲେ। ଶଅର ସାଇର ସମସ୍ତେ ମଧ୍ୟ ଉଠିପଡିଲେ। ଗୋଡ଼କୁ ଦଉଡିରେ ବାନ୍ଧିଲେ, ଦେହକୁ ବିଷ ନଯିବା ପାଇଁ। ଗାଁରେ ଜଣେ ମନ୍ତ୍ରଫୁଙ୍କି ଝାଡିକାଣେ, ତାକୁ ଡ଼କାଇଲେ। ମନ୍ତ ପଢି ସେ ଝାଡିଲା। ସେତେବେଳକୁ ରୋଗୀ ପୂରା ଅଚେତ ହୋଇସାରିଥିଲା। କୂଅରୁ ପାଣି କାଢି ଢଳାଯାଉଥିଲା। କୂଅମୂଳ ଅଗଣା ପାଣି ଚାଲିଥାଏ। ମନ୍ତ ପଢା ଚାଲିଥାଏ। ଦୁଇ ତିନି ଘଣ୍ଟାପରେ ଚେତା ଆସିଲା। ସମସ୍ତେ ବସିଥାନ୍ତି। ସାପ କାମୁଡା ରୋଗୀ ଏପରି ଅଦ୍ଭୁତ ଭାବେ ବଞ୍ଚିବ ବୋଲି କାହାରି ଆଶା ନଥାଏ। ରୋଗୀକୁ ରାତିରେ ଖାଇବାକୁ ଦିଆଗଲା ନାହିଁ। ଶୋଇବାକୁ ମଧ୍ୟ ଦିଆଗଲାନାହିଁ।

ତାପରଦିନ ସକାଳୁ ଶାଶୁ ଶ୍ୱଶୁର ମିନି ମିନିର ପୁଅକୁ ଧରି, ସାନ ନଣନ୍ଦକୁ ଧରି ମିନି ବାପଘରକୁ ଗଲେ। ଗାଁରେ ମିନିର ନଣନ୍ଦ ଦୁହେଁ, ଦିଅର ଚାରୋଟି, ପିଉସୀଶାଶୁ, ଗୋସେଇଁଶାଶୁ ଥାନ୍ତି। ଆଉ ଅନ୍ୟ ଚାକର ହଳିଆ ପ୍ରଭୃତି ଥାନ୍ତି। ବାପଘର ଯିବା ପୂର୍ବରୁ ଯେତିକିଦିନ ଗାଁରେ ମିନି ଥିଲା ସେତିକି ସମୟ ତାକୁ ପାଗଳୀ ପରି ଲାଗୁଥାଏ। ପୁଅର ବାପା କଟକରେ ଥିବାଯାଏ ବରାବର ଗାଁକୁ ଆସୁଥିଲେ। ପ୍ରତି ସପ୍ତାହରେ, ନହେଲେ ପନ୍ଦରଦିନରେ ଥରେ। କି ଖରା କି ବର୍ଷା ପଚିଶ ମାଇଲ ବାଟ ସାଇକଲରେ ଆସୁଥିଲେ। ଶନିବାର ଆସି ରବିବାର ସଞ୍ଜକୁ ଚାଲିଯାଉଥିଲେ। ପ୍ରାୟ ପାଞ୍ଚମାସ ହେବାକୁ ଯାଉଛି ସେ ଦୂରକୁ ଗଲେଣି। ଆଖ ପାଖ ନୁହେଁଯେ ମାସକୁ ଥରେ ହେଲେ ଆସିବେ। ବଡ଼ ନିରାଶ ଭାବରେ ଦିନ କଟାଏ ମିନି। ଯେତେ ଲୋକ ଥିଲେ କ'ଣ ହେବ,ଯାହାପାଇଁ କରିବ,ଯେ ଖୁସିହେବ ସେ ତ ନଥାଏ। ଚିଠି ବରାବର ଆସେ। ଚିଠି ବାରମ୍ବାର ପଢି ଖୁସିହୁଏ, ହେଲେ ଠିକ ସମୟରେ ମିନି ଚିଠି ଲେଖିପାରେନି। ଦିନଯାକ ଘରର ବିଭିନ୍ନ

କାମଦାମ, କିଏ ଆସିଲା, ଗଲା, ମଝିରେ ମଝିରେ ପୁଅର ଝଞ୍ଜାଳ। ରାତିରେ ଲେଖିବ ବୋଲି ଭାବିଥାଏ। ମାତ୍ର ଦିନସାରା ପରିଶ୍ରମରେ ଥକି ପଡ଼ିଥାଏ, ନିଦ ମାଡ଼େ। ତେଣୁ ରାତିରେ ମଧ୍ୟ ଲେଖିପାରେନି, ନିଜକୁ ଧିକ୍କାର କରି ଶୋଇପଡ଼େ। ତେବେ ସେ ଭାବେଯେ, ବୋଉ ପାଖକୁ ଗଲେ ଚିଠି ଲେଖିବାକୁ ବେଳ ମିଳିବ। ଏଣେ ଶାଶୁଘର ଛାଡ଼ିବାକୁ ରାଜି ହଉ ନଥାନ୍ତି। ପିଲାଟି ସମସ୍ତିଙ୍କ ନୟନଧନ ହୋଇଥାଏ। ଯାହାହେଉ ଶେଷରେ ବାପାଙ୍କ ସାଙ୍ଗରେ ଗଲା। ଶାଶୁ ଶ୍ୱଶୁର ସାଙ୍ଗରେ ଯାଇ ଛାଡ଼ିଦେଇ ଫେରିଲେ। ପୁଅକୁ ଧରି ନିଜେ ତା'କୁ ସମ୍ଭାଳିବା କଷ୍ଟ ହେଲା, ଭାରି ଚଗଲା ସେ ହୁଏ। ମିନି ଭଉଣୀ ବିନିର ପୁଅ ପ୍ରଶାନ୍ତ ମିନିପୁଅଠାରୁ ପନ୍ଦର ଦିନ ବଡ଼। ସେ ଧୀର, ଶାନ୍ତ। ଇଏ ତା'କୁ ମାରପିଟ କରେ। ତା'ଚୁଟି ଝିଙ୍କେ, ନାକକୁ ଧରି ଚିପି ଦିଏ। ବିନି ପାଟିକରେ, ଦେଖିଲୋ ଅପା, ତୋ ପୁଅ ମୋ ପୁଅକୁ କ'ଣ କଲାଣି। ଏ ଚଗଲାର ପୁଅ! କ'ଣ ଏତେ ଚଗଲା ହଉଛୁରେ? ମୋ ଅପାକୁତ ତୋ ବାପା ଭୁଲିଗଲେଣି। ତୋରି ସାଥିରେ ଦଉଡ଼ି ଦଉଡ଼ି ତା'ଦେହ କ'ଣ ହେଲାଣି? ପୁଣି ମିନି ଚିଠିପତ୍ର ନ ପାଇଲେ ବ୍ୟସ୍ତ ହୁଏ, କୁଆଡ଼େ ରହିଲେ ଏତେଦିନ ହେଲା? ସବୁ ଇଆଡ଼େ ସିଆଡ଼େ ପକାଏ, ପୁଅକୁ ମାରେ। ବିନି କହେ, ଦୁଷ୍ମନ୍ତ କୁଆଡ଼େ ଭୁଲିଗଲେ ଶକୁନ୍ତଳାକୁ। ଭରତଟି ଖେଳୁଛି। ବିନି ମିନିର ମନକଥା ବୁଝେ। ହଁ ବା, ଚିଠି ଖଣ୍ଡେ ଲେଖୁ ନାହାନ୍ତି। କିମିତି ମଣିଷଟିଏ ଯେ! ଯେତେବେଳେ ଚିଠି ଆସି ପହଞ୍ଚିଯାଏ ବିନି କହେ, ଅପା, ତୋ ମନ ଖୁସିତ ଏଥର। ହଉ ହଉ ତୁ ଚିଠି ପଢ଼। ମିନିର ସେ ଆଣ୍ଠୁ ରୋଗ ଭାରି ବଥା ବିନ୍ଧା ହୁଏ। ରାତିରେ ଗୋଡ଼ରେ ଗୋଟେ ଲୁଗା ଭିଡ଼ି ଶୁଏ। ବର୍ଷାରାତି ହେଲେ ବିନ୍ଧା ବଢ଼ିଯାଏ। ମିନି ବୋଉ ବ୍ୟସ୍ତ ହୁଅନ୍ତି, କ'ଣ କିପରି କରିବୁ, ଏମିତି ହେଲୁ ଯେ, କିଏ ଭଲ ପାଇବ, କିମିତି ଚଳିବୁ! ମିନି ଭାଇସାଙ୍ଗରେ ଡ଼ାକ୍ତର ପାଖକୁ ଗଲା। ସେ କିଛି ଇଞ୍ଜେକ୍ସନ୍ ଦେଲେ। ଟନିକ୍ କିଛି ଖାଇଲା। ଆଣ୍ଠୁ ଟିକିଏ ଉପଶମ ହେଲା, ଭଲକରି ଚାଲି ପାରିଲା।

କିଛି ଦିନପରେ ମିନିର ସାନଭଉଣୀ ବିନି ତା'ଶାଶୁ ଘରକୁ ଗଲା, ତା'ପୁଅକୁ ଧରି। ମିନିର ପୁଅ ଏକୁଟିଆଟି। ବିନିର ପୁଅ ରହିଥିଲା, ଏ ତାକୁ ଏ. ପୁଅ, ଏ ପୁଅ ଡ଼ାକେ। ସାନ ମାମୁଁଟି "ଏ 'ବ, ଏ ବ' ବୋଲି ଡ଼ାକେ। ତା'ନାଁ ଶିବ। ବଡ଼ କଉତୁକିଆ ହୋଇଥାଏ। ସହରରେ ବସନ୍ତ ବ୍ୟାପିଲା। ମିନି ପୁଅକୁ ବସନ୍ତ। ମିନିର ହଳକ ଶୁଖିଗଲା। ପୁଅକୁ ଚାରିଦିନ ଭୀଷଣ ଜ୍ୱର ପରେ ବସନ୍ତ ହେଲା। ମିନିର ବାପା ମିନି ଚାରିଦିନ ଚାରିରାତି ଅନିଦ୍ରା ରହି ଜଗିଥାନ୍ତି। ମିନିବାପା ଔଷଧ ଖୁଆଉଥାନ୍ତି। ପୁଅକୁ

ବହୁତ କଷ୍ଟ ହେଉଥାଏ । କିଛି ପିଉ ନଥାଏ । ଖାଲି ବିକଳ ହୋଇ କାନ୍ଦୁଥାଏ । ପିଲାର ଶରୀର କୋଉ ଦିନ ଆରୋଗ୍ୟ ହେବ, ମିନି ଠାକୁରଙ୍କୁ ଡ଼ାକୁଥାଏ । ଦେହର ବଳ ନଥିଲା ପରି ଲାଗୁଥାଏ, ରାତି ରାତି ଧରି ବସିଥାଏ । ମିନିର ଦିଅର ଗାଁରୁ ଆସି ପହଞ୍ଚିଲେ । ପୁଅର ଏ ଅବସ୍ଥା ଦେଖି ଫେରିଗଲେ । ସପ୍ତାହ ମଧ୍ୟରେ ମା ଭଗବତୀଙ୍କ ଦୟାରୁ ପୁଅ ଆରୋଗ୍ୟ ହେଲା, ଅଜା, ଆଈ, ବୋଉ ମାମୁଁ ଡ଼ାକିଲା । ଧୀରେ ଧୀରେ ସୁସ୍ଥ ହେଲା, ଚାଲବୁଲ କଲା । ମିନିଶାଶୂ ଶ୍ୱଶୁର ନାତିର ବସନ୍ତ କଥା ଶୁଣି ମିନିର ବାପା, ବୋଉଙ୍କ ଉପରେ ଖୁବ୍ ବିରକ୍ତ ହୋଇ ଚିଠି ଲେଖିଲେ, ଆମ ଘରେ କାହାରିକୁ ବସନ୍ତ ହୋଇ ନଥିଲା, ଆମ ନାତିକି କାହିଁକି ବସନ୍ତ ହେଲା ଇତ୍ୟାଦି । ଏ କଥା କିଏ କହିପାରିବ ? କାହାରିକୁ ହୋଇ ନଥିଲେ ମଧ ପୁଅକୁ ହେଲା । ଏହା ପୁଅକୁ ଭୋଗିବାକୁ ଥିଲା । ମିନିର ସ୍ୱାମୀ ପାଖକୁ ତା'ଶ୍ୱଶୁର, ଶାଶୁ ଚିଠି ଲେଖିଲେ, ପୁଅ ଦେହ ଏପରି ହୋଇଛି । ସେ ଦୂର ବିଦେଶରେ ଥାଇ ବ୍ୟସ୍ତହୋଇ ଚିଠି ଲେଖିଲେ, ପୁଅକୁ ଧରି ତୁମେ ଚଉଁକ ଗାଁକୁ ଯାଅ, ବାପା, ବୋଉ ବ୍ୟସ୍ତ ହେଉଛନ୍ତି । ମିନିବାପା ଆଦୌ ଛାଡ଼ିବାକୁ ରାଜି ହଉ ନଥାନ୍ତି, କହୁଥାନ୍ତି, ଜ୍ୱାଇଁ ଆସନ୍ତୁ । ସେ ଏଠିକି ଆସି ପୁଅ ସାଙ୍ଗରେ ମିଶନ୍ତୁ । ସେତେବେଳେ ଯାଇଁ ମୋ ମା ଯିବ । ଏବେ ଯାଇ କ'ଣ କରିବ ? ତା'ବୋଉ ପାଖରେ ଅଛି, ଭଲରେ ଅଛି । ମିନିଶାଶୂ ଶ୍ୱଶୁର ଯେତେ ଚିଠି ଲେଖନ୍ତି, ବୋହୂ ନାତିଙ୍କି ଆଣି ଆମ ଘରେ ଛାଡ଼ିଦିଅ, ମିନିବାପା ବରାବର କେବଳ ଏଇଆ ଲେଖନ୍ତି, ଜ୍ୱାଇଁ ଆସିଲେ ଆମ ପାଖକୁ ଆସିବେ । ଝିଅକୁ ସାଙ୍ଗରେ ନେବେ । ଚାରିମାସ ଏପରି ବିତିଗଲା । ସେମାନେ ନେବାକୁ ଆସିଲେ ନାହିଁକି ଏମାନେ ଛାଡ଼ିଲେ ନାହିଁ । ମିନିସ୍ୱାମୀ ତେରମାସ ପରେ କଟକରେ ପହଞ୍ଚିଲେ । ମିନି ତା'ବୋଉକୁ କହୁଥାଏ, ସେ କେବେହେଲେ ଏଠାକୁ ଆସିବେନାହିଁ । ମତେ ଯିବାକୁ ପଡ଼ିବ ଶାଶୁଘରକୁ । ମିନିବୋଉ କହିଲେ, ହଉ ତୁ ତୋ ଶାଶୁକୁ ଲେଖେ, ସେ ଆସିବେ । ମିନି ତା'ଶାଶୁଙ୍କୁ ଲେଖିଲା, ତୁମେ ଆସିଲେ ମୁଁ ଯିବାକୁ ପ୍ରସ୍ତୁତ ଅଛି ।

ମିନିଶାଶୁ ତାଙ୍କ ଜ୍ୱାଇଁଙ୍କୁ ଧରି ଆସିଲେ । ମିନିବାପା ବୋଉ ବ୍ୟସ୍ତ ହେଲେ । ଏତେଦିନ ଜ୍ୱାଇଁ ବାହାରକୁ ଗଲେ, ଆମପାଖକୁ ଟିକିଏ ଆସିଲେ ନାହିଁ । ମିନି ଗଲା ଶାଶୁ ସାଙ୍ଗରେ ଶାଶୁଘରକୁ । ପାଖଆଖ ବାଟ ନାହିଁ, ବହୁତ ଦୂର । ଦଶମାସ ରହିଲା ଭାଇ, ବାପା, ବୋଉ, ଭଉଣୀଙ୍କ ସାଥିରେ । ଗଲାବେଳକୁ ମନ ଯାହା ହେଉଥାଏ କିଏ ଅବା ଜାଣିବ ? ବହୁତ କାନ୍ଦୁଥାଏ । ଭାଇଟିମାନେ ଷ୍ଟେସନ୍‌କୁ ଛାଡ଼ି ଆସିଥାନ୍ତି । ଘରୁ ବାପା, ବୋଉ ବିଦାୟ ଦେଇ ରହିଲେ, ସେ ଯେମିତି ଘୋର୍ ଅପରାଧ କରିଛନ୍ତି । ଜ୍ୱାଇଁଙ୍କୁ ଅନାଇଁ

ଅନାଇଁ ରହିଲେ, ସେ ଆସିଲେ ନାହିଁ, ଝିଅ ଏକାକୀ ଗଲା। ଭାଇମାନେ ଷ୍ଟେସନ୍‌ରୁ ଅପାଠାରୁ ବିଦା ହୋଇ ଗଲାବେଳେ ଆଖିରୁ ଝର ଝର ଲୁହ ଝରି ଯାଉଥାଏ। ଅପା ଆଖିରେ ଭାଇଙ୍କ ମୁହଁଟିମାନ ନାଚି ଉଠୁଥାଏ। ମିନିର ଭାରି କୋହ ଉଠୁଥାଏ। ସ୍ୱାମୀଙ୍କଠାରୁ ଚଉଦମାସ କାଳ ଅଲଗା ହୋଇ ଶେଷକୁ ସେ ଆସିଲେ ନାହିଁ। ଏଣେ ବାପାବୋଉଙ୍କଠାରୁ ବିଦାୟ ନେଇ ଯାଉଛି, କେବେ ଆଉ ତାଙ୍କୁ ଦେଖିବ ! ତାଙ୍କ ମନ ଯେ କ'ଣ ହେଉଛି। ଭାଇଟିଯେ ରେଳଗାଡ଼ି ଧୀରେଧୀରେ ଚାଲି ଥିବାଯାକ ଅପା ମୁହଁକୁ ଅନାଇଁ ଚାଲିଥାଏ। ଗାଡ଼ି ଜୋର୍‌ରେ ଚାଲିଲା। ଭାଇ ମୁହଁଟି ଆଉ ଦିଶିଲା ନାହିଁ। ଭାଇର ମୁହଁଟି ବାରମ୍ବାର ନାଚିଉଠେ। ରେଳଗାଡ଼ିର ଶବ୍ଦ ସାଙ୍ଗକୁ ଚୁପିଚୁପି କାନ୍ଦଣା କୁଆଡ଼େ ହଜିଯାଏ। ମିନି ମନେମନେ ଭାବୁଥାଏ ଶାଶୁଘରେ ପହଞ୍ଚିଲେ, କ'ଣ କ'ଣ ହବ ଅବସ୍ଥା। କଟକ ଷ୍ଟେସନ ହେଲା। ମିନିଶାଶୁ ଏପାଖ ସେପାଖ ଚାହିଁଲେ। ପୁଅ କାଳେ ଆସିଥିବେକି ଭାବି। ଷ୍ଟେସନ୍ ଆସି ରାତି ଦୁଇଟା ଯାଏଁ ଚେଇଁ, ସେ ଶୋଇପଡ଼ିଛନ୍ତି। ଗାଡ଼ି ଡେ଼ରିରେ ପହଞ୍ଚିଲା ବେଳକୁ ସେ ଆଉ ଉଠିପାରି ନାହାନ୍ତି। ତାଙ୍କ ଗାଁ ଷ୍ଟେସନ୍ ହେଲା। ମିନିଦିଅର ବଳଦଗାଡ଼ି ଆଣିଥିଲେ। ସେଥିରେ ବସିଲା। ଘରେ ସକାଳୁ ସକାଳୁ ପହଞ୍ଚିଗଲା। ମାଘ ସରି ଫଗୁଣ। ଖରା ଟାଣ ହେଇଆସୁଥାଏ। ମିନି ଖରାବେଳେ ପୁଅକୁ ଶୁଆଇ ଦେଇ କାନ୍ଦୁଥାଏ। ଆଖିରୁ ଲୁହ ଝରଣା ଖୋଲିଲା ପରି ଚାଲିଥାଏ। ନିଦ ଟିକିଏ ହେଲେ ବି ଆସୁ ନଥାଏ। ସାନ ନଣନ୍ଦଟି ପାଞ୍ଚ ବରଷର ହବ। ମିନିର ମୁଣ୍ଡ ପାଖରେ ମୁଣ୍ଡ ଆଉଁଶୁଥାଏ। ସେ ଅବା ମିନିର ମନକଥା କାହୁଁ ବୁଝିବ ? ଭାବୁଛି ବୋଧହୁଏ ନୂଆବୋଉ ତା'ବାପା, ବୋଉଙ୍କୁ ଛାଡ଼ି ଆସିଛି ବୋଲି ଏତେ କାନ୍ଦୁଛି। ଆଉ ସଭିଏଁ ଖରାବେଳେ ଶୋଇପଡ଼ିଥାନ୍ତି।

ମିନି ତା'ମନକୁ ବୁଝାଇ ନିଜ କର୍ତ୍ତବ୍ୟ କରିବାରେ ଲାଗେ। ଶାଶୁ ଶ୍ୱଶୁର ରାତିରେ ଶୋଇ ଉଠିଲାବେଳକୁ ଡ଼ାଳ ମାଜି ଦାନ୍ତକାଠି, ପାଣି ଦେଇଥାଏ। ରନ୍ଧାବଢ଼ା କରେ। ନଣନ୍ଦ ଭାଉଜ ଦିହେଁ ମିଶି କାମ କରନ୍ତି।

ଏ ପର୍ଯ୍ୟନ୍ତ ସ୍ୱାମୀ ତା'ର ଗାଁକୁ ଆସିନାହାନ୍ତି। ଦୁଃଖତ ଦେହସୁହା ହୋଇଗଲାଣି। ସେ ଯୋଉ ଦିନ ଆସିବେ ଆସନ୍ତୁ। ଏମିତି ପନ୍ଦର ଦିନ ଗଲାଣି। ତା'ପରେ ଆସିବା ସନ୍ଧାନ ମିଳିଲା। କିଏ ଜଣେ କହିଲା ଭାଇ ଆସିଲେଣି। ପୁଅକୁ ଆସି ଦେଖି ଧରିଲେ। କେତେ କଥା ପଚାରିଲେ। ପୁଅ କ'ଣ କଥା କହୁଥାଏ। ଶନିବାର ଆସି ରବିବାର ରହି ସୋମବାର କଟକ ଗଲେ।



ଏମିତି ପ୍ରତି ମାସେ ଦୁଇମାସରେ ଥରେ ଗାଁକୁ ଯିବା ଆସିବା। ଏଗାର ମାସ କଟକରେ ରହିଛନ୍ତି, ଦିଲ୍ଲୀରେ ତାଙ୍କର ଚାକିରିଟିଏ ହେଇଗଲା। କଟକ ଯିବାଆସିବା ଭିତରେ ଥରେ ଖରାଛୁଟି ପରେ ଦଶହରା ଛୁଟି ପଡ଼ିଛି। ଖରାଛୁଟିରେ ବେଶିଦିନ ରହି ନଥିଲେ। ଦଶହରା ଛୁଟିଟା ଗାଁରେ ପୁଅ ସ୍ତ୍ରୀ ବାପା ମାଆ ଭାଇ ଭଉଣୀ ସହିତ ରହିଥିଲେ। ଛୁଟି ସରିଲା, ସେ ଗଲେ କଟକ। ଜଣେ ବନ୍ଧୁଙ୍କ ଘରେ ସେ ରହୁଥିଲେ। ଯା'ଭିତରେ ଛୁଆଟିଏ ହବାର ଥାଏ। ପୁଅକୁ ତିନିବର୍ଷ ପୂରିବାକୁ ତିନିମାସ ବାକି ଥାଏ।

ଝିଅଟିଏ ହେଲା ନଭେମ୍ବର ମାସ ପାଞ୍ଚ ତାରିଖ ବୁଧବାର ସଞ୍ଜବେଳକୁ। ସେହିଦିନ ସକାଳୁ ଟିକିଏ ଡ଼େରି ହୋଇଗଲା ମିନିର। ଅଣ୍ଟାଟା ବିନ୍ଧା ଲାଗୁଛି କାହିଁକି ସେ ଜାଣିପାରୁ ନାହିଁ। ସେତେବେଳକୁ ବଡ଼ ନଣନ୍ଦଟି ବାହା ହେଇ ଯାଇଥାନ୍ତି। ତା'ସହିତ କାମ କରିବାକୁ କିଏ ନାହିଁ। ସେଇମିତି ଦିନଯାକ କାମଦାମ କରୁଥାଏ। ଦିନ ଶେଷହବା ଆଗରୁ ଘର ଦୁଆର ଓଳାଇ କାଠଚୁଲି ଜାଳିଦେଇ ଭାତ ପାଇଁ ପାଣି ବସାଇଦେଲା, ଆଉ ଚାଉଳ ପକାଇ ପାରିଲାନାହିଁ। ପୁଅକୁ ଶ୍ୱଶୁର ନେଇଗଲେ। ଶାଶୁ ଆସି ରହିଲେ ମିନି ପାଖରେ। ଗାଈଗୋରୁମାନଙ୍କୁ ହଳିଆମାନେ ବାହାର ଦାଣ୍ଡରେ ଖୁଆଉଥାନ୍ତି। ମଝିଆଁନଣନ୍ଦ ସାନନଣନ୍ଦ ପାଖରେ ଥାନ୍ତି। ସେ ଦିହେଁ ବାହାରକୁ ଗଲେ। କିଛି ସମୟ ପରେ ଝିଅଟି

ଜନ୍ମ ହେଲା। ଝିଅର କୁଆଁ କୁଆଁ ଶୁଭୁଥାଏ। ମିନିଶ୍ୱଶୁର ପୁଅକୁ ବାହାରକୁ ଆଣି ପରିସ୍ରା କରାଉଥାନ୍ତି। ପୁଅ କହୁଥାଏ କିଏ ଏମିତି ବୋବଉଛି। ମାଙ୍କଡ଼ ଛୁଆଟେ ବୋବଉଛି କହି ଶ୍ୱଶୁର ତାକୁ ଭୁଲାଇ ନେଇଗଲେ। ଏଁ, ଏଁ, ମାଙ୍କଡ଼ ଛୁଆ ! ମିନିକୁ ପୁଅର କଥା ଶୁଭୁଥାଏ।

ମିନିର ଭୀଷଣ ପେଟବ୍ୟଥା ହେଉଥାଏ ଝିଅ ଜନ୍ମ ପରେ। କାର୍ତ୍ତିକ ମାସ। ଶୀତ ପଡ଼ିଥାଏ। ଶାଶୁ ଭଲକରି ନିଆଁ ଜାଳିଦେଲେ। ଶୁଖିଲା କାଠ ମୁଣ୍ଡିଆଟିମାନ ଜଳଉଥାନ୍ତି। ଏ ପେଟବ୍ୟଥା ତିନିଦିନ ଲାଗିରହିଲା। ସେଠୁଁ ଧୀରେ ଧୀରେ କମି ଆସିଲା। ଚାରିଦିନ ଗଲା। ପାଞ୍ଚଦିନ ବେଳ ଥାଉଣୁ ମିନିସ୍ୱାମୀ ତାଙ୍କର ଦୁଇ ଜଣ ବନ୍ଧୁଙ୍କୁ ଧରି ଆସିପହଞ୍ଚିଲେ। ପୁଅକୁ ପଚାରିଲେ, ଇଏ କିଏ ? ପୁଅ କହିଲା, ଏ ଝିଅ। ତୋର କ'ଣ ହେବ ? ମୋର ଭଉଣୀ।

ଶାଶୁ ଟିକିଏ ଅସୁସ୍ଥ। ସେ ରାତିରେ ମଝିଆଁନଣନ୍ଦଟି ଭାତ ତରକାରି ରାନ୍ଧିଥାନ୍ତି। ତାଙ୍କୁ ଚଉଦ ବର୍ଷ। ଶାଶୁ ତାଙ୍କପୁଅ ଆଉ ତାଙ୍କର ବନ୍ଧୁମାନଙ୍କୁ ଆସନ ପକାଇ ପିଢ଼ା ପାଣି ରଖି ଭାତ ତରକାରି ବାଢ଼ିଦେଲେ। ତିନି ବନ୍ଧୁ ବସିଲେ। ଶାଶୁ କହିଲେ, ଏସବୁ ଟୁନିଆ ରାନ୍ଧିଛି। ବନ୍ଧୁ ଜଣେ କହିଲେ, ହଁ ? ଟୁନିଆ ରାନ୍ଧିଛି ? ତା'ପରଦିନ ତିନିବନ୍ଧୁ ମିଶି କଟକ ଗଲେ। ସେଠୁଁ କେବେ ଦିଲ୍ଲୀ ଯିବେ ସେଥିପାଇଁ ବ୍ୟବସ୍ଥା କଲେ। ଝିଅକୁ ବାରଦିନ ଦିନ ସେ ପୁରୁଣା ଚାକିରିରୁ ରିଲିଭ ହେଇ ଗାଁକୁ ଆସିଲେ ଦିଲ୍ଲୀ ପାଇଁ ଟିକଟ କରିସାରି। ଝିଅକୁ ଚଉଦ- ଦିନ, ସେ କଟକ ଗଲେ। ଝିଅକୁ ଅଠରଦିନ ଦିନ ସେ କଟକ ଛାଡ଼ିଲେ। ସେ କଟକ ଛାଡ଼ିଲା ଦିନ ମିନିବାପା ଷ୍ଟେସନ୍ ଯାଇଥିଲେ। ମିନିବାପା ଗାଁକୁ ଆସିବାକୁ ବାହାରୁଥାନ୍ତି। ସେ କିନ୍ତୁ ମନା କଲେ, ପିଲାମାନେ ଭଲ ଅଛନ୍ତି, କାହିଁକି ଆପଣ ଏତେବାଟ ଯିବେ ? ତଥାପି ମିନିବାପା ନାତୁଣୀର ଏକୋଇଶିଆ ପାଇଁ, ନାତୁଣୀ ବେକକୁ ପଦକଟିଏ, ଫ୍ରକ୍ ଖଣ୍ଡିଏ, ନାତି ପାଇଁ ପେଣ୍ଟ, ସାର୍ଟ ଓ ଝିଅ ପାଇଁ ଶାଢ଼ି ଧରି ଆସିଲେ। ରାତିରେ କଟକରୁ ବାହାରି ଭୋରୁ ସାତ ମାଇଲ ବାଟ ଚାଲି ଚାଲି ଆସି ଗାଁରେ ପହଞ୍ଚିଲେ। ଠିକ୍ ଘର ଗେଟ୍ ପାଖରେ ପହଞ୍ଚିସାରି ପଡ଼ିଗଲେ। ଧୀରେ ଧୀରେ ଉଠିଲେ। ମିନିଶାଶୁ ବ୍ୟସ୍ତ ହେଲେ। ଶ୍ୱଶୁର ବି। ମିନିଶାଶୁ ଯାଇ ମିନିକୁ କହିଲେ, ଦେଖିଲଣି ତମ ବାପାଙ୍କୁ ! ଏତେଦୂର ଚାଲି ଚାଲି ଆସିଲେ, ପଡ଼ିଗଲେ ଏଇ ଗେଟ୍ ପାଖରେ। ମିନି ବାପା ଘରକୁ ଆସି ବସିଲେ। ନାତୁଣୀକୁ ଦେଖିଲେ। ନାତିକୁ ଧରିଲେ। ସମୁଦିଙ୍କୁ କହିଲେ, ମତେ ଜ୍ୱାଇଁ ମନା କରୁଥିଲେ କାହିଁକି ଆଉ ଯିବେ ? ମୁଁ ଚାଲି

ଆସିଲି ଝିଅକୁ ଦେଖିବି, ଆପଣମାନଙ୍କୁ ଦେଖିବି, ନାତି ନାତୁଣୀଙ୍କୁ ଆଶୀର୍ବାଦ କରିବି। ମିନିବାପା ଦୁଇ ଦିନ ରହିଲେ। ସେଠୁଁ କଟକରେ ରହୁଥାନ୍ତି, କଟକ ଗଲେ।

— ୧୪ —

ମିନିର ସ୍ୱାମୀ ଦିଲ୍ଲୀରେ ପହଞ୍ଚିଲେ। ଭାରତୀୟ ପୁରାତତ୍ତ୍ୱ ସର୍ବେକ୍ଷଣ ବିଭାଗରେ ଯୋଗ ଦେଲେ। ସେଠୁଁ ଘରକୁ ଚିଠି ଲେଖିଲେ। ଦିଲ୍ଲୀ ସହରରେ ଚାକିରି କରିବା ଏଇ ପ୍ରଥମ। ଅଫିସରମାନେ, କର୍ମଚାରୀମାନେ ଅଧିକାଂଶ ବିରାଟକାୟ। ନିଶ୍ଚେ ତାଙ୍କୁ ଟିକିଏ ଅଡୁଆ ଲାଗିଥିବ। ଅଫିସ୍‌ରେ ପିଅନ ଚପରାସି ଗାଡ଼ି ସବୁ ଥାଏ। ଦିଲ୍ଲୀ ପଞ୍ଜାବ ରାଜସ୍ଥାନ ଆଉ ଦିଲ୍ଲୀକୁ ଲାଗି ଉତ୍ତରପ୍ରଦେଶର କିଛି ଅଞ୍ଚଳରେ ତାଙ୍କ କାମ। ଟୁର୍‌ରେ ଯାଆନ୍ତି। ଡ୍ରାଇଭର୍ କାଳୁରାମ ଜିପ୍ ଚଳାଏ। ଟୁର୍ ପରେ ଦିଲ୍ଲୀ ଫେରି ଅଫିସ୍ କରନ୍ତି।

ମିନି ଗାଁରେ ଥାଏ। ପୁଅ, ଝିଅ, ଶାଶୁ, ଶ୍ୱଶୁର, ଗୋସେଇଁଶାଶୁ, ହଳିଆ, ମୂଲିଆ — ସେମିତି ନିତିଦିନିଆ କାମ। ପୁଅ ଝିଅଙ୍କ କାମ ଚାଲିଥାଏ। ନଣନ୍ଦ ପାଠ ପଢୁଥାନ୍ତି। ଘରେ ମିନି ମଧ୍ୟ ତାଙ୍କ ସହିତ ପଢ଼େ। ଇଆଡ଼େ ଗୋସେଇଁଶାଶୁ ବିଗିଡ଼ି ଯାନ୍ତି, ବୁଆବୋଉତ ପାଠ ପଢ଼ିବସିବେ, ଆମକୁ ରୋଷେଇ ବାସ କରି କିଏ ଦେବ? ମିନି ଭାତ ବସାଇଦେଇ ଝିଅକୁ ଶୁଆଇ ଦେଇ ନଣନ୍ଦଙ୍କ ସହିତ ଇଂରେଜି ଟ୍ରାନ୍ସଲେସନ୍ କରେ, ପଢ଼େ। ପଢ଼ାସାରି ଆସିଲା ବେଳକୁ ଝିଅ ଅନ୍ଧାର ଘରେ ଶୋଇଥାଏ। ପୁଅ ଏପଟ ସେପଟ ହୋଇ ଢୁଳେଇ ପଡୁଥାଏ। ବଡ଼ ବିରକ୍ତ ଲାଗେ ମିନିକୁ, ଛି, କି ପାଠ ପଢ଼ିଲି! ପୁଅ ନ ଖାଇ ଶୋଇ ପଡ଼ିବ, ଝିଅ, ଅନ୍ଧାରରେ ଶୋଇଲା! ରୋଷେଇଶାଳକୁ ଯାଏ, ଚୁଲି ଲିଭିଯାଇଥାଏ। ଚୁଲିଜାଳେ। ଭାତ ଗାଳେ। କ'ଣ ତରକାରି କରେ। ପୁଅ କୋଉଦିନ ଉପାସ ଶୋଇପଡ଼େ। ଏମିତି ବଡ଼ ହନ୍ତସନ୍ତ ହେଇଯାଏ। ଏଇମିତି ନିତିଦିନିଆ କାମକୁ ବୁଆମାନଙ୍କୁ ହଇରାଣ କରି ପାଠ ପଢ଼େ।

ଦିନକର ମନ ହେଲା ଲେମ୍ବୁ ଆଚାର ତିଆରି କରିବ। ବାରିରେ ଲେମ୍ବୁ ଗଛଟିଏ। ଭରପୂର ହୋଇ ଲେମ୍ବୁ ହୋଇଛି। ମନେ ପଡ଼ିଗଲା, ବୋଉ ଥରେ ଲେମ୍ବୁ ଆଚାର ପଠାଇଥିଲା, ତିନି କିଲୋ ହେବ। ପୁଅ ଜନ୍ମ ହେବା ଆଗରୁ। ପୁଅକୁ ଧରି ବୋହୂ ପାଖରେ ଥିଲାବେଳେ ପଚାରିଥିଲା। ବୋଉ କହିଲା, ଆଈ ତିଆରି କରି ଦେଇଥିଲା, ତା'କୁ ପଚାରେ। ଆଈକୁ ପଚାରିଲା, ଲେମ୍ବୁ ଆଚାର କେମିତି ତିଆରି କରିଥିଲ? ଭଲ ହୋଇଥିଲା।

ସେ ବତାଇ ଦେଲେ—ଗୋଟେ ରାତି ଲେମ୍ବୁ ପାଣିରେ ପକାଇ ରଖିବୁ। ତା'ପର ସକାଳେ ପାଣିରୁ ବାହାର କରି ତାଟରେ ରଖିବୁ। ପରିଷ୍କାର କନାରେ ପାଣି ପୋଛିଦବୁ। ପାଣି ରହିଲେ ଆଚାର ପଚିଯିବ। ତା'ପରେ କାଟିବୁ। ଲେମ୍ବୁଟି ଲାଗିଥିବ ଚାରିସୋରା କରିବୁ। ସେଥିରେ ଲୁଣ ଭର୍ତ୍ତି କରିବୁ। ଗୋଟେ ହାଣ୍ଡିରେ ଘୋଡ଼ାଇ ରଖିବୁ। ଚାରିଦିନ ରଖିବୁ। ତା'ପରେ ପ୍ରତିଦିନ ଲେମ୍ବୁ ଅଲଗା ଶୁଖାଇ, ତା'ର ହାଣ୍ଡିରେ ଝରିଥିବା ପାଣିହାଣ୍ଡିଟି ଅଲଗା ଶୁଖାଇବୁ। ପାଣି ଶୁଖିଥିବ, ଲେମ୍ବୁ ଶୁଖିଥିବ। ସବୁ ଶୁଖିଗଲେ ତା'କୁ ସେହି ହାଣ୍ଡିରେ ରଖିଦବୁ। ମସଲା ଦବୁ। ଲଙ୍କା ଗୁଣ୍ଡ, ମେଥି ଗୁଣ୍ଡ, ଗୁଡ଼, ଏକାଠି ଗୁଡ଼ ସହିତ ଚକଟିଦେଇ ତାକୁସବୁ ଶୁଖିଲା ଲେମ୍ବୁ ଭିତରେ ପୂର ଦେଇଦବୁ। ରଖିଦେବୁ। ଅଳ୍ପ ତେଲ ଦବୁ। ଯେତେ ବର୍ଷ ରଖିବୁ, ରହିବ। ମିନି ସେମିତି ଲେମ୍ବୁ ଗଛରୁ ତୋଳି ଆଣିଲା। ଲେମ୍ବୁକୁ ରାତିରେ ପାଣିରେ ବୁଡ଼ାଇ ରଖିଲା। ତା'ପର ଦିନ କାଟିଲା। ମିନି ତା'ଆଈକୁ ପଚାରିଥିଲା, ପାଣିରେ କାହିଁକି ରାତିକ ଲେମ୍ବୁ ବୁଡ଼ିରହିବ ? ଆଈ କହିଥିଲେ, ଲେମ୍ବୁଗୁଡ଼ିକ ଗୋଟିଏ ରାତି ବୁଡ଼ିରହିଲେ, ସେଗୁଡ଼ିକ କାଟିଲା ବେଳେ ପାଣି ଲେମ୍ବୁର ଏତେ ବାହାରକୁ ବୋହି ଆସିବନାହିଁ। ଆଈ କହିବା ମୁତାବକ ମିନି ଲେମ୍ବୁ ଆଚାର ତିଆରିକରି ରଖିଦେଲା। ଶାଶୂ ଶ୍ୱଶୁର ଦେଖି ଖାଇ ବହୁତ ଖୁସି ହେଲେ। ବହୁତ ଦିନ ସେ ଆଚାର ରହିଲା।

ଏମିତି ଘରକାମ ଚାଲିଥାଏ। ପୁଅକୁ ତିନି ବର୍ଷ ପୂରିଲା। ମିନି ଶାଶୂ ଶ୍ୱଶୁର କହିଲେ, ନାତିର ଜନ୍ମଦିନରେ ବୁଢ଼ା ବୁଢ଼ୀ ଲୋକମାନଙ୍କୁ ଡ଼ାକିବା। ଭଲରେ ରୋଷେଇବାସ କର। ତାଙ୍କୁ ଖାଇବାକୁ ଦେବ। ମିନି



ପୁଅର ଜନ୍ମଦିନ ପୂଜା ପାଇଁ ସବୁ ଯୋଗାଡ଼ କଲା। ଏଣେ ଭଲକରି ରନ୍ଧା କଲା। କେତେଜଣ ଗାଁର ବୁଢ଼ା ବୁଢ଼ା ଲୋକସବୁ ବସି ଖାଇଲେ। ବହୁତ ତୃପ୍ତ ହେଲେ। ପୁଅକୁ ଛୋଟ ନୂଆ ଧୋତି ପିନ୍ଧାଇ ଦେଲେ ତା ଜେଜେମା। ଛୋଟିଆ ଚଦରଟି ଦେହରେ ପକାଇଦେଲେ। ଫୁଲ ଚନ୍ଦନ ଲଗାଇଦେଲେ। ଷଷ୍ଠୀ ଦେବୀଙ୍କ ପାଖରେ ବନ୍ଦାପନା କଲେ। ମିନିଶାଶୁ ପୁଅକୁ ଧରି କାନ୍ଦି ପକାଉଥାନ୍ତି। ତାଙ୍କ ପୁଅତ ଦିଲ୍ଲୀରେ ଦୂରରେ ଅଛନ୍ତି, ନାତିଟି ଠିକ୍ ପୁଅଭଳି ହେବ, କହୁଥାନ୍ତି।

ଏମିତି ତିନିମାସ ଗଲା। ପୌଷ ମାଘରେ ଆଚାରକରିବା, ବଡ଼ି ତିଆରିକରିବା ସରିଲା। ମିନିକୁ ଆଉ କିଛି ଭଲ ଲାଗୁ ନଥାଏ। ରାତିକୁ ଭଲ ନିଦ ହୁଏନାହିଁ। ପିଲାଙ୍କୁ କୋଳକୁ ନିଏ। ଭାବେ, ଏ ପାଖରେ ଥିଲାବେଳେ ମାସେ, ଦିମାସରେ ଆସୁଥିଲେ। ଏବେତ ଏତେ ଦୂରରେ, କେବେ ଆଉ ଆସିବେ। ବଡ଼ ବ୍ୟସ୍ତ ହୁଏ ମିନି। ଦିନେ ଖରାବେଳେ ଝିଅକୁ ଧରି ଶୋଇଛି। ପୁଅ ତା'ର ବାଡ଼ିଟି, ତା'ଜନ୍ମଦିନ ତା ଆଇ ଦେଇଥିବା ଛୋଟିଆ କୁମ୍ଭ ଡ଼ାଳଟି ଧରି ଘରର ଏପାଖ ସେପାଖ ହେଉଥାଏ। ତା'ବାପାର ଫଟୋଟିକୁ ଧରି କହୁଥାଏ, ବୋଉ, ବାପା, ବାପା। ମିନିର ଆଖିରେ ଲୁହ ଆସିଗଲା, ପୁଅ କେତେ ନିସଃହାୟ ହୋଇ ପଡ଼ିଛି! ମିନି ଦୁଇଟି ଛୁଆଙ୍କୁ କେମିତି ସମ୍ଭାଳିବ ? ନିଜକୁବିତ ସମ୍ଭାଳି ପାରୁ ନାହିଁ। ମନ ଯେ କ'ଣ ହେଇ ଯାଉଛି! ତେବେ ସବୁ ସହି ଯାଉଛି। ନିଦ ରାତିରେ ଭଲ ନହେବାରୁ ଦିନରେ କାମଦାମ କରିବାକୁ ବଡ଼ ଦୁର୍ବଳ ଲାଗେ। ମୁଣ୍ଡଟା ଭାରି ଭାରି ଲାଗେ। କେବେ ସେ ଆସିବେ କିଛି ଜଣା ପଡୁନାହିଁ। ଶାଶୁ ଶ୍ୱଶୁର ବୁଝି ପାରନ୍ତି ମିନିକୁ, ପୁଅ ମନେ ପଡୁଥିବ। ମନ ଦେହ ଭଲ ରହିବା ପାଇଁ ହୋମିଓପ୍ୟାଥିକ୍ ଔଷଧ ଦିଅନ୍ତି।

ମିନିବାପା ତ କଟକରେ ରହୁଥାନ୍ତି। ସେ ଆସିଲେ ଝିଅକୁ ନେବାକୁ। ଶାଶୁ ଶ୍ୱଶୁର ରାଜି ହୋଇଗଲେ। ପୁଅ ଝିଅଙ୍କୁ ଧରି ମିନିବାପାଙ୍କ ସହିତ ତିଆରି ହୋଇଗଲା ବୋଉ ପାଖକୁ ଯିବାକୁ। ପୂର୍ବପରି ବଳଦଗାଡ଼ି ତିଆରି ହେଲା। ସାନ ଦିଅର ମଧ ବାହାରିଲେ। କଟକ ଗାଡ଼ି ଧରିଲେ, ପାସେଞ୍ଜର। କଟକ ଷ୍ଟେସନ୍‌ରେ ଓହ୍ଲାଇ ବ୍ରହ୍ମପୁର ପାଇଁ ମେଲ୍ ଗାଡ଼ିକୁ ଅପେକ୍ଷା କଲେ। ଝିଅ ଶୋଇପଡ଼ିଲା। ପୁଅ ଅନାଇଁ ଏପାଖ ସେପାଖ ଘୁରୁଥାଏ ଅଜାଙ୍କ ସହିତ। ଗାଡ଼ି ଆସିଲା। ରାତି ଆଠଟା ହେବ। ମିନି ତା'ପୁଅ ଝିଅ ସାନ ଦିଅର, ମିନିବାପା ସବୁ ଯାଇ ଗାଡ଼ିରେ ବସିଲେ। ତା'ବୋଉ ପାଖରେ ପନ୍ଦର କୋଡ଼ିଏ ଦିନ ରହିବ। ତା'ଭାଇତ ବମ୍ବେ ଯିବ ଚାକିରିରେ। ମିନି ଭାବୁଥାଏ ବିନି ନିଶ୍ଚେ ପାଖରେ ଥିବ। ଭୋରୁ ଯାଇ ଘରେ ପହଞ୍ଚିଲେ।

ମିନିବାପା ଦି'ଦିନ ରହି କଟକ ଫେରି ଆସିଲେ। ସାନଦିଅର ମଧ ଫେରିଲେ, କଟକ ସ୍କୁଲ୍‌କୁ। ମିନି ବୋଉ ପାଖରେ ପୁଅ, ଝିଅଙ୍କୁ ଧରି ରହିଲା। ତିନି ଭାଇ ପାଖରେ ଥା'ନ୍ତି। ମିନି ଭଉଣୀ ବିନି ପଡ଼ିଶା ଘରେ ଥାଏ ଘର ଭଡ଼ା ନେଇ। ସେ ଆସେ।

ମିନିର ଥରେ ଏମିତି କ'ଣ ଡ଼ାଇରିଆ ହେଲା। ସେ ଅସୁସ୍ଥ ହୋଇପଡ଼ିଥାଏ। ଭାଇ ସେଦିନ ରାତିକୁ ବମ୍ବେ ଯିବା ପାଇଁ ତିଆରି ହୋଇଛି, ସକାଳ ଉଠି ମିନି ଦେହ ଅସୁସ୍ଥ। ଭାଇ ଯାଇ ଔଷଧ ପତ୍ର ଆଣିଲା। ମିନି ଖାଇ ସୁସ୍ଥ ହେଲା। ବିନି ମିନିଝିଅକୁ ନେଇ ସମ୍ଭାଳି ଥାଏ। ବୋଉତ ବହୁତ ବ୍ୟସ୍ତ ପୁଅ ଯିବ, ଝିଅ ଦେହ ଭଲ ନାହିଁ। ଯାହା ହେଉ ଭାଇ ଗଲାବେଳକୁ ମିନି ସୁସ୍ଥ ହୋଇ ଗଲାଣି। ବୋଉ ଭାବୁଥାଏ, ପୁଅ ଏତେ ଦୂରକୁ ଯାଉଛି, ଦି'ଦିନ ଦି'ରାତି ଗାଡ଼ିରେ ବସିବ। କୁହେ, ହଁ, ଟ୍ରେନ୍‌ରେ ଯାଇଥିଲା ଯେ, ଶୋଇଲାବେଳେ ଜଣେ ଭଦ୍ର ଟ୍ରେନଯାତ୍ରୀଙ୍କୁ କହିଥିଲା ଉଠାଇ ଦେବାପାଇଁ, ସେ ଠିକ୍ ସମୟରେ ଉଠାଇ ଦେଇଥିଲେ। ଏମିତି ପୁଅ କଥା ଭାଳି ହେଉଥାଏ ବୋଉ। ପୁଅ ଗଲା, ଭଲରେ ପହଞ୍ଚିଲା। ଚାକିରିରେ ଯୋଗଦେଲା। ସବୁ ବିଷୟ ଲେଖି ଜଣାଇଲା।

ମିନି ରହିବା ଭିତିରେ ବିନିର ପୁଅଟିଏ ହେଲା। ସେଥିପାଇଁ ମିନିବୋଉ ରୋଷେଇବାସ କାମଦାମରେ ବ୍ୟସ୍ତ ଥାଏ। ତା'ରି ଭିତରେ ମିନି ସହିତ କଥାବାର୍ତ୍ତା ଦୁଃଖସୁଖ ହୁଏ। ମିନି ପହଞ୍ଚିବାର ପଚିଶଦିନ ହୋଇଛି, ଶାଶୁ ଶ୍ୱଶୁର ଆସି ପହଞ୍ଚିଲେ, ମିନିକୁ ଆଣିବାକୁ। ଦିନଟିଏ ରହିଲେ।

ମିନିବୋଉ କହୁଥାନ୍ତି, ଆଉ କିଛି ଦିନ ରହିଥାନ୍ତା, ମାସ ଗୋଟାଏ ହୋଇନି। ମିନିଶାଶୁ ଶ୍ୱଶୁର କହିଲେ, ନାଇଁମ ସମୁଦୁଣୀ ମାସେ ରହିଲେ ଯାହା, ଦିମାସ ରହିଲେ ତାହା। ଆମେ ଆସିଛୁ, ସାଙ୍ଗରେ ନେଇଯିବୁ। ଛୁଆତ ଆମର ଏଠି ରହିଲେ, ଆମକୁ ସେ ଘରଦୁଆର ଭଲ ଲାଗୁନି। ଠୁଙ୍କା ଠୁଙ୍କା ଲାଗୁଛି। ମିନିବାପା କିନ୍ତୁ ଘରେ ନଥିଲେ। ମିନିବୋଉ ହଁ ଭରିଲେ, ହଁ, ଦବା ଜିନିଷରେ ମୋର କି ଅଧିକାର ଅଛି। ମିନି ପୁଅ ଝିଅଙ୍କୁ ଧରି ବୋଉ ଭାଇ ଭଉଣୀଙ୍କଠୁଁ ବିଦାୟ ନେଲା। ମଝିଆଁଭାଇ ସାନଭାଇ ଆସି ଷ୍ଟେସନ୍‌ରେ ଛାଡ଼ିଗଲେ। ସେହିପରି ଭାଇମାନଙ୍କୁ ଆଖି ଲୁହରେ ବିଦାୟ ଦେଲା। ଗାଁରୁ ଶଗଡ଼ ପହଞ୍ଚିଥିଲା। ପିଲାଙ୍କୁ ଧରି ଦୀର୍ଘ ସମୟ ପରେ ଗାଁରେ ପହଞ୍ଚିଗଲା। ଶାଶୁ ଶ୍ୱଶୁର ପାଖରେ ଥିଲେମଧ, ବୋଉ ଭାଇ ଭଉଣୀଙ୍କ କଥା ମନେ ପଡୁଥିଲା। ବାପା କଟକରେ ଅଛନ୍ତି, ଦେଖି ନଥିଲା। ଭାଇଟି ବମ୍ବେ ଯାଇଛି। ଗାଁଘର ପାଖରେ ଶବର ସାହି। ଶବରମାନେ ବଣରେ ଫଳ ମୂଳ ଶିକାର ଖାଇ ବଞ୍ଚିରହିବା ଅବସ୍ଥାରୁ ବେଶ୍ ଆଗେଇଥିଲେ। ମିନିଶାଶୁ ଘର ସେମାନେ ସାଇ ପଡ଼ିଶା। ବେଶ୍ ଘରଦୁଆର କରିଛନ୍ତି।

ଗାଈ ବଳଦ ବାନ୍ଧିଛନ୍ତି। ଚାଷ କରୁଛନ୍ତି। କ୍ଷୀର ଦୁହୁଁଛନ୍ତି। ଭଲ ସରୁ ଚାଉଳ ଭାତ ଖାଉଛନ୍ତି। ଘର ଦୁଆର ଲିପାପୋଛା କରୁଛନ୍ତି। କଂସା ଗିନା ଗରା ଲୋଟା ମାଜୁଛନ୍ତି। ମିନି ତା'ଶାଶୁଙ୍କୁ ପଚାରେ, ବୋଉ ଏମାନେ ତ ବେଶ୍ ଆମ ମାନଙ୍କ ପରି ଅଛନ୍ତି? ମିନିଶାଶୁ କହନ୍ତି, ହଁ ପରା, ଆମଠୁଁ ଅଧିକ ଭଲରେ ଅଛନ୍ତି। ମିନିଶାଶୁଘର ପଡ଼ିଶାକୁ ଯେଉଁ ଶବର ଘରଟି ସେମାନେ ତିନି ଭାଇ। ଏକାଠି ଥାନ୍ତି। ଦି ଭାଇ ବାହା ହୋଇଥାନ୍ତି। ସାନଟି ଅଭିଆଡ଼ା। ବୁଢ଼ୀମା ଥାଏ। ବେଶ୍ ଭଲ ଦେଖିବାକୁ। ସୁନ୍ଦରୀ ମଧ୍ୟ। ଧାନ ବିଲକୁ ଯାଏ। କାଠ ଆଣିବାକୁ ଜଙ୍ଗଲ ଯାଏ। ପାଚିଲାଆମ୍ବ ପରି ଗୋରା ଦେହଟି। କିଏ ତାକୁ ଶବରୁଣୀ କହିବ? ପ୍ରାୟ ମିନିଘରକୁ ଆସେ। ବୋହୂ ଦୁହେଁ ଘରକାମ କରନ୍ତି। ବଡ଼ବୋହୂଟିର ପୁଅ ଝିଅ କିଛି ନଥାଏ। ମଝିଆଁବୋହୂର ଦୁଇଟି ଝିଅ। ବଡ଼ବୋହୂ ଝିଅଟିମାନଙ୍କୁ ଆଦରରେ ଧରିଥାଏ। ଖୁଆଇଦିଏ, ଗାଧୋଇ ଦିଏ। ମଝିଆବୋହୂ ବଡ଼ଝିଅଟିକୁ ଝିଅ କରିଥାଏ। ବଡ଼ବୋହୂଟି ଅତି ଭଲ। ମଝିଆଣୀ ରନ୍ଧାବଢ଼ା କରେ। ଧାନ କୁଟେ, ଉଁସା ଶୁଖା କରେ। ବଡ଼ବୋହୂ ଶାଶୁସାଙ୍ଗରେ ବଣକୁ ଯାଏ। ଭୋରୁ ଉଠି ଗୁହାଳ ପୋଛେ। ଗାଈଗୋରୁ ବାହାରେ ବାନ୍ଧେ। ଘରଦୁଆର ଲିପାପୋଛା କରେ। ବୁଢ଼ୀ ଆସି ପହଞ୍ଚିଯାଏ, ମିନିଶାଶୁଙ୍କ ପାଖରେ, ବୁଢ଼ୀକୁ କମଳୀମା ଡ଼ାକନ୍ତି। ତା'ଝିଅ ନାଁ କମଳୀ। ବଡ଼ ପୁଅ ଲୋଚ଼ନ। ମଝିଆଁ ପୁଅ ନାଁ କୁସୁନିଆଁ। ସାନ ପୁଅ ରୁଷିଆ।

କମଳୀମା ମିନିକୁ ପଚାରେ, ବୋଉ କ'ଣ ତରକାରି କଲ? ମିନିଗୋସେଇଁଶାଶୁ ପାଖରେ ବସେ, ଦେଇ କ'ଣ କରୁଛ? ବସିଛ! ହଁ ଲୋ ମା ବସିଛି। କ'ଣ କରିବି ଆଉ, ଆଖିକୁ ଦିଶୁନାହିଁ। କିଏ କମଳୀମା କିଲୋ? ହଁ ଦେଇ, ନାତୁଣୀବୋଉ କେତିକି ଆସିଥିଲି। ସେ ଏକା ଏକା ଖାଉଛନ୍ତି, ଆମକୁ ତରକାରି ଟିକେ ଦଉନାହାନ୍ତି। ମିନି ନୂଆ କରି ଯେତେବେଳେ ଶାଶୁଘରେ ପହଞ୍ଚିଥିଲା ପନ୍ଦରଦିନ ଭିତରେ ଶାଶୁ ଭଲ ଭଲ ତରକାରି ବହୁତ ବହୁତ କରିବାକୁ କହୁଥିଲେ। ପିଉସୀ ଶାଶୁ ପରିବା କାଟି ଯୋଗାଇ ଦେଉଥିଲେ। ନଣନ୍ଦ ମସଲା ବାଟିଦେଉଥିଲେ। ମିନି କେବଳ ଭାବେ ଏତେ ତରକାରି କ'ଣ ହେବ? ଦେଖୁ ଦେଖୁ ମିନିଶାଶୁ ପିଉସୀଶାଶୁ ଶବର ସାହି ଓ ପାଖ ଘର ଦୂର ଘରକୁ ସବୁ ଡ଼ାକି ଆଣି ତରକାରି ବାଣ୍ଟନ୍ତି, ବୋହୂ ରାନ୍ଧିଛି ପରା, ସମସ୍ତେ ତରକାରି ନବ ଆସରେ।

ମୀନ ବୋଲି ହଳିଆ ଥାଏ। ପୁରୁଣା। ବିଶ୍ୱାସୀ। ତା'ବାପା ବୁରୁନ୍ଦା ଶଅର। ରୋଗା ହୋଇଯାଇଥାଏ। ବୋହୂକୁ ଦେଖିବ ବୋଲି ଦଶଣା ପଇସା



ଧରିଥିଲା। ବୋହୂଦେଖା। କାହାଠୁଁ ଚାରଣା। କାହାଠୁ ଆଠଣା। କିଏ ଦଶଣା ଦେଉଥିଲା। ମିନିଶାଶୁ ମିନିକୁ ଓଢ଼ଣା ପକାଇଦେଇ କେତେ ଲୋକଙ୍କ ଗୋଡ଼ତଳେ ପକାଉଥିଲେ। ହୁଏତ ଶଅରସାହିର ଭାବଦୋସ୍ତି ଲୋକମାନେ।

— ୧୫ —

ମିନିକୁ ଯିଏ ପ୍ରଥମେ କାରରୁ ଓହ୍ଲାଇଥିଲେ ସେ ବୁଢ଼ୀଜଣକ ବଡ଼ ମଜାଦାର ସ୍ତ୍ରୀଲୋକ। ମିନିକୁ ଚତୁର୍ଥୀଦିନ ରାତିରେ ଖୁଆଇ ଦେଇଥିଲେ। ମିନି ନିଦରେ ଶୋଇପଡ଼ିଥିଲା। ତା'କୁ ନିଦରୁ ଉଠାଇଦେଲେ। ଖାଇବାକୁ ବଢ଼ାହୋଇଛି ଦେଖିଲା ମିନି। କେମିତି ପେଟ ଘାଣ୍ଟିହୋଇ ବାନ୍ତି ବାନ୍ତି ଲାଗିଲା। ବୁଢ଼ୀ ବସି, ଲେମ୍ବୁ ଚିପୁଡ଼ି, ଅଳ୍ପକିଛି ଖୁଆଇଦେଲା। ମିନିକୁ ଭଲ ଲାଗିଲା। ଆଉଜଣେ ବୁଢ଼ୀ ମଧ ମିନି ଖୁଡ଼ୀଶାଶୁର ମା। ସେ ଜଣେ ଆସନ୍ତି। ପାନ, ଗୁଆ, ଗୁଣ୍ଡି, ମସଲା ଅଳ୍ପ ଅଳ୍ପ ଅଣ୍ଟାରେ ଖୋସିବେ। ମିନି ଗୋସେଇଁଶାଶୁଙ୍କର ବଡ଼ ନଜର ଏସବୁଥିରେ। କିଏ ଆସିଲା ଗଲା, ଆଖିକୁ ସିନା ଦିଶୁନାହିଁ। କହୁଥିବେ ଆଲୋ ଏ ସୁମି ସେ ମନୁ ମହାନ୍ତି ବୁଢ଼ୀ ଗଲାଣି ନା ଅଛି? ଅଛି ଲୋ ମା। ନୂଆବୋଉ ପାଖେ ବସିଛି। ଏଁ ନୂଆବୋଉ ପାଖେ ବସିଛି! ଡାକୁ ଡ଼ାକେ ଡ଼ାକେ ତାକୁ। ବାରିଆଡ଼କୁ ଡ଼ାକିନେ। ସେ ମୋ ବୋଉକୁ କ'ଣ କ'ଣ ଶିଖେଇବ ଲୋ! ମୋ ବୋଉ

ପାଖରୁ କ'ଣ ନେଇ ପଳାଇବ ଯେ। ମିନିଶାଶୁ ଶୁଣି କହନ୍ତି, କ'ଣ କହୁଛମ, ଏମିତି କ'ଣ ତମ ଘରକୁ ଆସିବେ ଆଉ ଯିବେ ନାହିଁ। ନାତୁଣୀ ବୋହୂ ବୋଲି ଆଦର କରି ବୋହୂ ପାଖେ ବସିଛି ଯେ; ବୋହୂଠୁଁ କ'ଣ ନେଇ ପକେଇବ! ଶ୍ୱଶୁର ଶୁଣି କହନ୍ତି, ହଁ,ହଁ କାହିଁକି ଯେ ତମେ ଏତେ ଲୋକଙ୍କୁ ଘରେ ପୂରାଉଛ? ବାଜେ ଲୋକଗୁଡ଼ାକ। କ'ଣ ସେମାନେ ବୋହୂ ସାଙ୍ଗରେ ଗପ କରିବେ? ହଉ ଏଥର ତାକୁ ଘରୁ ବିଦା କର। ଦୋଷାମା ଆସେ, ଅନେକ କାମଦାମ ମିଶି କରିଦିଏ। ପାନ ଖାଏ। ସିଏ ବି ଅଣ୍ଟାରେ ଗୁଆ, ଗୁଣ୍ଡି, ପାନ ଖୋସିଦିଏ। ମିନି ଗୋସେଇଁଶାଶୁ ଭାରି ଜଣେ। ସବୁ ବୁଝନ୍ତି। ନାତି, ନାତୁଣୀଙ୍କୁ କହନ୍ତି, ଦେଖିବୁଟି ସୁମି, ଆରେ ଏ ଖନା, ଦେଖିବୁଟି। ସେ ଦୋଷାମା'କୁ। କ'ଣ କ'ଣ ଅଣ୍ଟାରେ ଖୋସିଛି। ହଁ ଲୋ ମା, ଗୁଆ ଗୁଣ୍ଡି ପାନ ଖୋସିଥିଲା। ମୁଁ ତା'ଅଣ୍ଟାରୁ ଭିଡ଼ିଆଣିଲି ଯେ ମୋ ହାତକୁ ଭିଡ଼ି ପକାଇଲା। କହିଲା, ଯାରେ ଟୋକା, କ'ଣ ମୋ'ଅଣ୍ଟାରୁ ଭିଡୁଛୁ? ହଁ ଲୋ, ତା'ର ଏଡ଼େ ବହପ। ମୋନାତି ହାତକୁ ମୋଡ଼ି ଦେଲା। ଆଉ ଦିନେ ମୋ'ଘରକୁ ଆସିଥିବଟି ଦେଖିବ। ମୋ'ଘରତ ସାରିଦେବେ। ମୋପୁଅ କୋଉଠୁଁ କେତେ ଆଣିବ? ମୋନାତି କୋଉଠୁଁ କୁଆଡୁ ଆଣିବ? ବୁଢ଼ୀ ଡ଼ାକନ୍ତି, ବୋଉ, ବୋଉମ! ଆଲୋ ସେ ଦୋଷାମା କ'ଣ ସବୁ ଅଣ୍ଟାରେ ଖୋସିଥିଲା ଖନା ଧରିଲା। ତା'ହାତକୁ ଫୋପାଡ଼ିଦେଲା। ହେଲେ ତେମେ ଟିକେ ନଜର ଦଉନ, ଏ ଘର ରହିବଟି। କେତେ କୁଆଡୁ ଆଉଚିନି, ଯାଉଚିନି। ଏ ଶଅରସାହିଆତ ଏତେ ମୋ ଘରେ ଚାଲୁଚିନି। ମିନିଶାଶୁ କହନ୍ତି, କିଏ କ'ଣ ନେଇଗଲା? ଏତିକି କଥାକୁ ଖାଲି ତମେ ଏଡ଼େ କରୁଥା। ଆଉ କାହାର କିଛି କାମ ନାହିଁ, ଖାଲି ତମର ସବୁ ଚୋରିକରି ସବୁ ନେଇ ଯାଉଛନ୍ତି। ହେଲେ, ବୁଢ଼ୀମନ ଭାରି ବିଦାରି ହେଉଥାଏ। ବହୁ ଲୋକ ଆସନ୍ତି, ଯାଆନ୍ତି। ଭୀମାମା ବୋଲି ଦୋଷାମା'ର ବଡ଼ଯାଆ। ତା'କୁ ମିନିର ଗୋସେଇଁଶାଶୁ ଭଲ ପାଆନ୍ତି। କହନ୍ତି, ଏ ମୋ ଦାଦାଝିଅ ଭଉଣୀ ପରା। ଆଲେ ଭୀମାବୋଉ, ବସ। ପାନ ଟିକିଏ ଖାଇବୁ ନାହିଁ। ଆଲୋ ଅପା ତୁ ନାତୁଣୀ ବୋହୂ ରାନ୍ଧଣା ଖାଇ, ବସିଛୁ। ଆହୁରିତ କ'ଣ ମୋଟିମାଟି ହେଲୁଣି। ଆମକୁ କାହିଁକି ପଚାରିବୁ? ଆଲୋ ଅପା, ବୋହୂ କେମିତିଆ? କହନି ଲୋ ଭୀମାବୋଉ, ତା କଥା କହନି। କିଛି ଜାଣେନି। ହୁଣ୍ଡୀଟା। ହେଲେ କେମିତିକାଘର ଝିଅ ଆସିଛି। ଭାରି ଭଲ ରନ୍ଧାବଢ଼ା ଦିଆନିଆ ସବୁ କରୁଛି। ଗୋସେଇଁଶାଶୁକୁତ ଖୋଇଖୋଇ ଏମିତି କଲାଣି। ମୁଣ୍ଡ କୁଣ୍ଡାଇ ଦେଉଛି। ବହେ ଘସୁଛି। ହେଲେ ଏଟାକୁ ଘସିଆସେନି। ପୁଣି କହନ୍ତି, ତା'କଥା କହନିଲୋ ଭୀମାବୋଉ, ମୋ ମନକୁ ଖୁବ୍ ପାଇଛି। ହେଲେ କ'ଣ ହେବ, ହୁଣ୍ଡୀଟାତ କିଛିଜାଣେନି। ଚାବିକାଠି ରଖିପାରୁନି। ମୁଁ ପରା

ତା'ଚାବିକାଠି ହେଇ ଅଣ୍ଟାରେ ଖୋସିଛି। କୁଆଡ଼େ ପକାଉଛି, କିଏ କୁଆଡୁ ଘେନିପଳାଇବେ। ହଁବା ଅପା, ବଳେ ସବୁ ବୋହୂ କରିବନାହିଁ? ଏବେ ପରା ସେ ନୂଆଭୂଆ। କାହାକୁ କିଛି କହିପାରୁ ନାହିଁ। ବଳେ ହବନିଯେ। ହଁ ଲୋ ଭଉଣୀ। କଇଲାଣ କର। ରାଇଜରେ ରହନ୍ତୁ। ନାତି ମୋର ଏକୁଧରି ଘରକରୁ। କ'ଣ ପାଇବି। ଆଲୋ ଏ ଛୁଆବୋଉ, ଆ କତିକି। ମିନି ଦୁହିଁଙ୍କୁ ମୁଣ୍ଡିଆମାରେ, ହଁ କିଏ ଅକଇଲାଣ କରୁଛିବା। ଯା ଉଠୁ ଯା। ଭୀମା ମା' ଉଠି ଠିଆହେଲେ। ଆଲୋ ଭୀମାବୋଉ ଯାଉଛୁ? ଯାଉଛି ଲୋ ଅପା। ହଉ ଯା, ଆଉ ଦିନେ ଆସିବୁ। ମୁଁ ପରା ତତେ ଆଜି ମନେ କରୁଥିଲି ଲୋ।

ଶଅର ସାହିର କମଳୀମା', ଆହୁରି ତା ଯା, ଚରଣିଆମା' ଆସନ୍ତି। ଦେଇ, କ'ଣ କରୁଛ? ନୂଆବୋଉ କ'ଣ କରୁଛନ୍ତି? କାହା କଥା କହୁଥିଲୁକି? ଆମ ଛୁଆବୋଉ କଥା? ଦେଇମ, ତେମେ କ'ଣ ଛୁଆବୋଉ ଡ଼ାକକି? ସୁନାଭାରିଯାକୁ ବଡ଼ବୋଉ ଡ଼ାକେ। ମୁନାଭାରିଯାକୁ ସାନବୋଉ ଡ଼ାକେ। ଇଏ ମୋର ଛୁଆବୋଉ।

ମାଗୁଣିଆ ବୋଲି ଜଣେ ଶଅର ଟୋକା। ଦେଖିବାକୁ ହାଣ୍ଡିକଳା ପରି। ବେଶ୍ ମୋଟମାଟ ଗୋଲଗାଲ ଭେଣ୍ଡିଆଟିଏ। ହଳିଆ ଥାଏ। ମିନିପୁଅ କିଛି ଖାଏନାହିଁ, କ୍ଷୀର ପିଏନାହିଁ। ସେତେବେଳକୁ ମାଗୁଣିଆକୁ ଡ଼କରା ହୁଏ।



ମିନିପୁଅ କାହାରିକୁ ଖାତିର କରେନାହିଁ। ଯେତେ ଝିଏ ବୁଝାଇଲେ ମଧ୍ୟ ଖୁଆଇ ପାରନ୍ତିନାହିଁ। ତଳୁ ଚାଳଘର ଓପରକୁ ଲମ୍ବା ମୋଟା କାଠଟାଏ ପଡ଼ିଥାଏ। ତାକୁ ଧରି ମାଗୁଣିଆ ହଲାଏ ଆଉ ପାଟି କରେ, ଦେଖିବ ଏଇଖଣ୍ଣା। ପିଇବ ନା ନାହିଁ? ହୁଃ କହି ପୁଣି କାଠଟାକୁ ହଲାଇଦିଏ। ସେତିକିରେ ପୁଅ ଢ଼ୋକକେଇଟା କ୍ଷୀର ପିଇଦିଏ। ମାଗୁଣିଆ ମୁହଁକୁ ଚାହୁଁଥାଏ। ସତେ କ'ଣ ମାଗୁଣିଆ ରାଗିଗଲା! ମାଗୁଣିଆ କାନ୍ଧରେ ବସାଏ, ଖେଳାଏ, ବୁଲାଏ। ସଞ୍ଜ ହେଲେ ମାଗୁଣିଆ ଏମିତି କ'ଣ ହୁଏ। ବୋକାଟି ପରି ମାଗୁଣିଆକୁ ଡ଼ରରେ ଚାହିଁଥାଏ। ସକାଳୁ ମାଗୁଣିଆ ଡ଼ାକେ, ଆସ ଟିକୁନିବାବୁ, ବିଲକୁ ଯିବା। ହଳ ବୁଲାଇବା ନାହିଁ? ମାଗୁଣିଆ ଯେତେବେଳେ ହଳଧରି ବିଲକୁ ଯାଏ, ଟିକୁନି ଡ଼ାକ ପକାଏ, ମାଗୁଣିଆରେ, ଏ ମାଗୁଆ! କୁଆଡ଼େ ଯାଉଛୁ? ବିଲକୁ ଯାଉଛୁ?

ଆଉ ଜଣେ ହଳିଆ ଥାଏ, ଚ଼ନ୍ଦା। ବେଶ୍ ପାଞ୍ଚ ଫୁଟିଆ ମର୍ଦ ଟୋକାଟା, ଗୋରା ମଧ୍ୟ। ତାକୁ କିଏ ଶଅର ବୋଲି କହିବନାହିଁ। ମାଗୁଣିଆ ପାଖକୁ ଚ଼ନ୍ଦା। ସକାଳୁ ଦେଢ଼କଂସା ପଖାଳ ଠୁଙ୍କିଦିଏ। ସକାଳୁ ଉଠି ଗାଧୋଇସାରି ମିନି ଶାଗଭାଜେ, ବହୁତ ଅନାବନା ଶାଗ, କଖାରୁଶାଗ, ତା'ସାଙ୍ଗରେ ମିଶାଇ ସଜନାଶାଗ। ମିନିଶାଶୁ ଶାଗବାଡ଼ିରୁ କରିଆଣନ୍ତି। ହଳିଆମାନେ ଖାଇବେ, ମାଗିଲା ଲୋକ ଅଛନ୍ତି, କେତେ କୁଆଡ଼ୁ ଆସିବ? ଘର ଚାରିପାଖ ସଜନାଗଛ ଥାଏ, ଅନ୍ୟାନ୍ୟ ଶାଗ ନହେଲେ ଖାଲି ସଜନାଶାଗ ଭଜାହୁଏ। ବଡ଼ିସକାଳୁ ବିଲକୁ ଯିବେ, ଏତେ ସକାଳୁ ଶାଗ ଯୋଗାଡ଼ କରିବାକୁହେବ। ଯୋଉଦିନ ଶାଗ ଟିକିଏ ଡ଼େରିରେ ତିଆରିହବ ସେଦିନ ଅନ୍ୟ ହଳିଆ ବା ଗାୟାଳ ଖଟା ଟିକିଏ ବା ଶୀତଦିନ ହେଇଥିଲେ, ବାସି ତରକାରି ଥିଲେ, ପଖାଳ ଖାଇଦେଇ ଚାଲିଯା'ନ୍ତି। ଚ଼ନ୍ଦା ଆଉ ନଖାଏ, କେବଳ ଶାଗଭଜାକୁ ଅନାଇଁ ବିଲକୁ ଯିବା ଡ଼େରି। କାଠ ଚିରିଦିଏ। ଅନ୍ୟ କାମଦାମ କରୁଥାଏ। ଶାଗ ତ ନିଶ୍ଚୟ ମାଇଁ ଭାଜିବେ। ମିନିଶାଶୁ କହିବେ, ନେଲୋ ମା ଶାଗ। ନଭାଜିଲେ କ'ଣ ଚ଼ନ୍ଦା ପଖାଳ ଖାଇବ ନା ବିଲକୁ ଯିବ? ଶାଗ ଭଜାହବ, ଚ଼ନ୍ଦା ପଖାଳଖାଇ ବିଲକୁ ଯିବ। ଦିନେଦିନେ ଚ଼ନ୍ଦା ତା'ଘରେ ରାତିରେ ରହିଯାଏ। ସକାଳୁ ଉଠି ଆସିଲାବେଳେ ତା'ମା ତା'କୁ କହେ, ଆରେ ଚ଼ନ୍ଦା ଖାଇକରି ଯା। ମଲା, ମୋ ମାଇଁ ଯୋ ଶାଗ ଭାଜିଦେବେ ପଖାଳ ଖାଇବି ନାହିଁଯେ, ଖାଇକି ଯାଉଛି! ହେଲେ ମିନି ଏ ହଳିଆମୂଲିଆଙ୍କ ଆଗକୁ ଯାଏନି, କିଏ ଖୁଡ଼ୀ ଡ଼ାକେ ତ କିଏ ମାଇଁ ଡ଼ାକେ। କିଏ ଝିଆରୀ ବୋଲାଏତ କିଏ ନଣନ୍ଦ ବୋଲାଏ। ଗାଁ ସାଇରୁ ଝିଅମାନେ ବୁଲି ଆସନ୍ତି। ଅନେକଙ୍କର ମିନି ନୂଆବୋଉ। ତେଣୁ କେତେ ଥଟାତାମସା ଝିଏ କରନ୍ତି।

ଖେଳନ୍ତି, ବୁଲନ୍ତି, ଯା'ନ୍ତି। ସାଆନ୍ତଘର, ସାଆନ୍ତଙ୍କ ସ୍ତ୍ରୀ ତାଙ୍କ ବଡ଼ବୋହୂକୁ ଝିଅକୁ ଧରି ଆସନ୍ତି। ସାଆନ୍ତାଣୀ ଭାରି ଭଲ। ସାଆନ୍ତଙ୍କ ବଡ଼ବୋହୂ ମିନିକୁ ଯାଆ ଲେଖା କରନ୍ତି। ତାଙ୍କ ନଣନ୍ଦମାନେ ନଣନ୍ଦ ହିସାବ ହୁଅନ୍ତି। ଏଇମିତି ଗାଁରେ ହସଖୁସି ଦୁଃଖସୁଖରେ ଦିନ କଟିଯାଏ ମିନିର।

ଦଶରା ଛୁଟିରେ ମିନି ସ୍ୱାମୀ ଦିଲ୍ଲୀରୁ ଆସିବେ, ଚିଠି ଲେଖିଲେ। ନଣନ୍ଦ କଟକରୁ ଫେରିଲେ, ସ୍କୁଲ୍ ଛୁଟି ହେଲା। ନଣନ୍ଦ ବଳଦଗାଡ଼ିରେ ଷ୍ଟେସନ୍‌ରୁ ଫେରିଲାବେଳେ ଘର ପାଖ ହେଇଆସିଲା। ମିନିର ବଡ଼ନଣନ୍ଦେଇ ଗାଡ଼ି ଆଗରେ ବସି ବଳଦ ଅଡ଼ାଇଆଣୁଥିଲେ। ମିନି ବାରି ଗଡ଼ିଆରେ ଗାଧୋଉଥିଲା। ନଣନ୍ଦଙ୍କର ନୂଆବୋଉଠାରେ ନଜର ପଡ଼ିଲା। ହେଇ ନୂଆବୋଉ ଗାଧୋଉଛନ୍ତି କହିଲା। ନୂଆବୋଉର ମଧ ଶଗଡ଼ରେ ନଜର ପଡ଼ିଲା। ମିନି ତରତର ହୋଇ ଗାଧୋଇସାରି ଘରକୁ ଗଲା। ନଣନ୍ଦ ଆସିଲେଣି। ଆନନ୍ଦରେ ଗୋଡ଼ ତଳେ ଲାଗିଲା ନାହିଁ। ସମସ୍ତେ ବଡ଼ ଖୁସି ହେଲେ। ଚାଲିଲା ଦଶରା ଛୁଟିର କାମଦାମ, ଦଶରା ଦିନ ପିଠା। ପୁଅଝିଅ ଖେଳୁଥାନ୍ତି, ସମସ୍ତେ ପୁଅ, ଝିଅଙ୍କୁ ଖେଳାନ୍ତି, ବୁଲାନ୍ତି। ଦିନେ ନଣନ୍ଦ ଶାଶୁଙ୍କୁ କହିବା ମିନି ଶୁଣିଲା, ବୋଉ, ଭାଇତ ଆସିବେ, ମୋ ପାଖକୁ ଚିଠି ଲେଖିଛନ୍ତି। କେବେ ଆସିବେ କିଛି ଲେଖିନାହାନ୍ତି। ଶାଶୁ କହିଲେ, ଏଥର ଆସିଲେ କ'ଣ ନୂଆବୋଉକୁ ନବ? ଏବେ ଆସିଲେ ବୋଧହୁଏ ନବନାହିଁ। ତେବେ ବୋହୂ ନାତି ନାତୁଣୀ ଯିବେ ନିଶ୍ଚେ, ମନରେ ଭାବୁଥାନ୍ତି। ହଳିଆଙ୍କୁ ସକାଳୁ କହିଲେ, ଆଜି ମହାବିନାୟକ ଯିବା। ଶାଶୁ, ଶ୍ୱଶୁର, ବୋହୂ, ସାନଝିଅ ନାତି, ନାତୁଣୀଙ୍କୁ ଧରି ବାହାରିଲେ। ମଝିଆ ନଣନ୍ଦ ରହିଲେ ଘରେ। ଏମାନେ ସଂଜକୁ ଶୀଘ୍ର ଶୀଘ୍ର ଫେରି ଆସିବେ। ଶଗଡ଼ ଗାଡ଼ି। ଛୁଆ ତିନି, ବଡ଼ ତିନି। ହଳିଆ ବଢ଼ିକରି ଛପର ବାନ୍ଧିଥିଲା। ମହାବିନାୟକ ଦର୍ଶନକରି ଆଖପାଖ ବୁଲାବୁଲି କଲେ। ବଡ଼ ବଡ଼ ଆମ୍ବଗଛ, ପଣସ ଗଛ। ପଣସ ଗଛମାନଙ୍କରେ ପଣସଗୁଡ଼ିକ ଭରାହେଇ ରହିଥାଏ। ଫେରିବାବେଳେ ଶଗଡ଼ ଗାଡ଼ିର ମନ୍ଥର ଗତିରେ ସବୁ ଦେଖି ଦେଖି ଆସୁଥାନ୍ତି, ଫୁଲଫଳ ଭରା ଜଙ୍ଗଲ ରାସ୍ତାରେ। ଘରେ ପହଞ୍ଚିଲା ବେଳକୁ ବଡ଼ ନଣନ୍ଦେଇ ଭାତ ରାନ୍ଧିଛନ୍ତି, ପଣସତରକାରି କରିଛନ୍ତି। ମିନି ଭାବୁଥିଲା, ଯାଇକରି ପୁଣି ରୋଷେଇ କରିବ। ନଣନ୍ଦ କହିଲେ, କୃଷ୍ଣଭାଇ ଭାତ ତରକାରି କରିଛନ୍ତି।

ଶ୍ୱଶୁର, ଶାଶୁଙ୍କୁ ମାନଚିତ୍ର ଦେଖାନ୍ତି, ପୁଅ ଏବେ ଏଇଠି ଅଛି। ମିନିଶାଶୁ ବେଳେବେଳେ କାନ୍ଦି ପକାନ୍ତି। ବୋହୂ ଏତେ ଦୂରକୁ ଚାଲିଯିବ, ରାମବନବାସ ପରି ପୁଅବୋହୂ କେତେ ଦୂରରେ ରହିବେ।

ଦଶରା ଛୁଟି ସରିବାକୁ ବାକିଥାଏ, ମିନିସ୍ୱାମୀ କଟକରେ ପହଞ୍ଚିଲେ। ତା'ପରେ ଗାଁକୁ ଆସିଲେ। ଘରେ ପହଞ୍ଚିବା ପୂର୍ବରୁ ମିନିର ନଣନ୍ଦମାନେ, ଦିଅରମାନେ, ଶାଶୁ, ପୁଅକୁ ଧରି ମୁଅଙ୍କୁ ପାଛୋଟି ଆଣିବାକୁ ଗଲେ। ମିନିପୁଅ ମଧ୍ୟ ଭାଇ ଆସିଲେଣି ବୋଲିଂଶ୍ରଦ୍ଧାରେ ଚାଲିଥାଏ। ଭାଇ, ଭଉଣୀମାନେ ଖୁସି ହେଉଥାନ୍ତି। ମିନିର ଝିଅଟି ଚୁଲିପାଖେ ମିନି ରୋଷେଇ କଲାବେଳେ ବସିଥାଏ। ବାପା ଆସି କୋଳକୁ ନେଲେ। ଝିଅତ ବାପାକୁ ଦେଖି ନଥାଏ। ତେଣୁ ଅଚିହ୍ନା ବାରି କାନ୍ଦି ପକାଉଥାଏ। ଟିକୁନି ସାନ ପିଇସୀ କୁମ ସାଙ୍ଗରେ କେତେବେଳେ ଭାଇତ କେତେବେଳେ ବାପା କହୁଥାଏ। ମିନି କହେ, ବାପାକୁ ତୋର କ'ଣ ଭାଇ କହୁଛୁ? ପୁଅ କହେ, କୁମ କେମିତି କହୁଛି? ମିନି ବୁଝାଏ, କୁମ ତୋ ବାପାଙ୍କର ପରା ସାନ ଭଉଣୀ। ତୁ ପରା ତୋ ବାପାଙ୍କର ପୁଅ। ହଁ ମୁଁ ପୁଅନା ବାପାଙ୍କର। କୁମ ସାନ ଭଉଣୀନା ବୋଉ? ଜେଜେବାପା କୁମ ଅପାର ବାପା, ନୁହଁ? ସେ ମୋର ଜେଜେବାପା। ଛୁଟି ସରି ଆସିଲା। ସମ୍ବଲପୁରରୁ ବଡ଼ଦିଅର ଛୁଟିରେ ଆସିଥିଲେ, ଦ୍ୱିତୀୟ ଦିଅର ଥିଲେ, ତୃତୀୟ ଦିଅର ଥିଲେ, ଚତୁର୍ଥ ଦିଅର ପାଖରେ ନଥିଲେ, ସାନଦିଅର ଥିଲେ, ତିନୋଟିଯାକ ନଣନ୍ଦ ଥିଲେ। ଘରଟି ପୂରି ଉଠୁଥିଲା। କେବଳ ଗୋଟିଏ ବୋହୂ ମିନି ଥିଲା ସବୁରି ଆଦରରେ ନୂଆବୋଉ, ଛୁଟି ସରିଲାଠୁଁ ସମସ୍ତେ କର୍ମକ୍ଷେତ୍ରକୁ ବାହାରିଲେ। ମିନି, ତା'ସ୍ୱାମୀ, ପୁଅ, ଝିଅ ଦିଲ୍ଲୀ ଯିବାକୁ ବାହାରିଲେ।

କିଛିଦିନ ପୂର୍ବେ ମିନିର ତୃତୀୟ ଦିଅର ଟାଇଫଏଡ୍‌ରେ ପଡ଼ିଥିଲେ—କଟକରେ। କଟକରୁ ଭଲହୋଇ ଫେରିବା ପରେ ଗାଁରେ ସବୁ ଜିନିଷ ଖାଇବାପରେ ପୁଣି ଜ୍ୱର ଲେଉଟିଲା। ଗାଁରେ କେତେ ଦିନ ପଡ଼ିଲେ। ମିନିଶାଶୁ ଶ୍ୱଶୁର ଚିକିତ୍ସା କରୁଥାନ୍ତି। ମିନି ନିୟମିତ ଯାହା ଖାଇବା ପଥ୍ୟ ଦଉଥାଏ। ଠିକ୍ ସମୟରେ ନଦେଲେ ଦିଅର ରାଗି ଉଠୁଥାଏ। ମିନି ଦିଲ୍ଲୀ ଆସିବା ପୂର୍ବରୁ ସମ୍ପୂର୍ଣ୍ଣ ଭଲହୋଇ ଯାଇଥିଲା। ହେଲେ ତା'ମନ ଭାରି ଖରାପ। ନୂଆବୋଉଙ୍କ ପରି କିଏ ଏତେ ଯତ୍ନ କରି ଖାଇବାକୁ ଦବ। ମିନି ଆସିବା ପୂର୍ବଦିନ ଘୋର ବର୍ଷା ଚାଲିଥାଏ। ସମସ୍ତେ ଚିନ୍ତିତ ଥାନ୍ତି। ଆସିବାଦିନ ବର୍ଷା ଛାଡ଼ିଯାଇଥିଲା।

ଯାହା ଯେମିତି ଦବାର କଥା ଆଚାର ଚାଉଳ ଆଦି ମିନିଶାଶୁ ଦେଲେ। ଶାଶୁ, ନଣନ୍ଦ, ଗୋସେଇଁଶାଶୁ ବ୍ୟସ୍ତହୋଇ କାନ୍ଦୁଥାନ୍ତି। ଶଗଡ଼ ଗାଡ଼ିରେ ମିନି ବସିଲା ତା'ପିଲାଙ୍କୁ ଧରି। ଟିକୁନିକୁ ଚାରିବର୍ଷ ହେଇ ନଥାଏ, ହେଲେ ସେ ସବୁ ବୁଝି ଯାଇଥାଏ। ମା' କାହିଁକି ଏତେ କାନ୍ଦୁଛି? ଆମେ ସବୁ କୁଆଡ଼େ ଯାଉଛୁ? ମା' କାହିଁକି ଆସୁନି? ଷ୍ଟେସନ୍ ଯିବା ବାଟରେ

କହୁଥାଏ, ଆରେ ଏ ମାଗୁଣିଆ ଶଗଡ଼ ଇଆଡ଼େ କାହିଁକି ଆଣୁଛୁ? ମୋ ମା କାହିଁ? ମୋ ମା ପାଖକୁ ବଳଦ ଅଡ଼େଇ ଦେ। ହଁ ହଁ ବାବୁ, ଆମେ ପରା ମା ପାଖକୁ ଯାଉଛୁ, କୁଆଡ଼େ ଯାଉଛେ କି? ମିନିର ଦୁଇଜଣ ଦିଅର ପାଖରେ ଥାନ୍ତି। ପୁଅକୁ ବୁଝାଉଛି। ନଣନ୍ଦ ପାଖରେ ବସିଥାଚ୍ଛି। ସେ କଟକ ଯାଉଥାନ୍ତି ପଢ଼ିବାକୁ। ନଣନ୍ଦ ଭାଉଜ ପିଲା ଦିହିଁଙ୍କୁ ଧରି ବସିଥାନ୍ତି। ନଣନ୍ଦ ଭାଉଜ ଦିହିଁଙ୍କ ଆଖି ଲୁହ ଛଳଛଳ। ଟିକୁନି ମଝିରେ ମଝିରେ କହେ, ଦାଦା ମୁଁ ତମସାଙ୍ଗେ ଚାଲିବି। ଦାଦା କହନ୍ତି, ନାହିଁରେ ବାବା ଭାରି ଖରା ହୋଇଛି, ଏଇନା ଆଉ ଗୋଟେ ଗାଡ଼ିରେ ବସିବା, ଆଉ ଟିକିଏ ବସିପଡ଼। ଦାଦା ଦୁହିଁଙ୍କ ମଧ୍ୟରୁ ଜଣେ ଆସି ପାଖରେ ବସି କେତେ ଗପ କରନ୍ତି। ଟିକୁନି ଚୁପ୍‌ଚାପ୍ ପିଲା ନୁହେଁ, ଭାରି ଗପୁଡ଼ା। ସେ ସବୁବେଳେ ବକର ବକର ହଉଥିବ। ଖରାବେଳେ କେବେ ଶୋଇବ ନାହିଁ। ସେ ପୁଣି ବୋଉପାଖେ ବଳଦଗାଡ଼ିରେ ବସିରହିବ! ଏମାନେ ପହଞ୍ଚୁ ପହଞ୍ଚୁ ଡେ଼ରି ହୋଇଗଲା, ଗାଡ଼ି ଫେଲ୍ ହେଲେ। ମିନିସ୍ୱାମୀ ଆଗରୁ ସାଇକେଲ୍‌ରେ ପହଞ୍ଚି କଟକ ଚାଲିଗଲେ। ଗାଁ ଷ୍ଟେସନ୍ ପାଖର ରବି ବାବୁ ଏମାନଙ୍କର ଜଣାଶୁଣା। ତାଙ୍କ ଘରେ ଖରା ବେଳଟା କଟାଇଲେ। ରାତି ଆଠରେ ଗାଡ଼ିରେ ଯିବେ। ରବି ବାବୁଙ୍କ ମା'ଙ୍କୁ, ସ୍ତ୍ରୀଙ୍କୁ, ଭଉଣୀଙ୍କୁ ମିନି ଓଳଗି ହେଲା। ସେଦିନ କାର୍ତ୍ତିକ ମାସ ସୋମବାର ଥିଲା। ରବି ବାବୁଙ୍କ ମା'ଙ୍କର କାର୍ତ୍ତିକ ମାସ ହବିଷ। ଖରାବେଳେ ଖାଇବାକୁ ଦେଲେ। ସାରୁ, ଓଉ, କଦଳୀ, ମୁଗ ଡ଼ାଲି ଘିଅ ବଘରା ହୋଇଥାଏ। ଅରୁଆ ଭାତ। ମିନି ଏମିତି କଥାବାର୍ତ୍ତା ହେଲା। ମା'ତାଙ୍କ ଉପଦେଶାବଳୀ କଥା କହୁଥାନ୍ତି। ତାଙ୍କ ଘର ବାରି ସବୁ ବୁଲି ଦେଖିଲେ। ମିନିନଣନ୍ଦ ଶୋଇପଡ଼ିଲେ। ମିନିକୁ ଆଉ ନିଦ ହେଲାନାହିଁ। ରବିବାବୁଙ୍କ ଭଉଣୀ ଯାଦୁସାଦୁ ଗପ କରୁଥାନ୍ତି, ପଚରାଉଚରା କରୁଥାନ୍ତି ମିନି ସବୁ ଶୁଣୁଥାଏ। ବା ପ୍ରଶ୍ନର ଉତ୍ତର ଦଉଥାଏ। ଝିଅଟି ପାଖରେ ଥାଏ। ଟିକୁନି ତାର ଦାଦାମାନଙ୍କ ପାଖରେ ଥାଏ। ଦାଦାମାନେ ବାହାରେ କିଏ କ'ଣ ଜଳଖିଆଖାଇ ରହିଗଲେ। ଏତେ ଲୋକ। ହଳିଆ ମୂଲିଆ ବାହାରେ ଯେ ଯେମିତି ଖାଇଲେ। ଚତୁର୍ଥ ଦିଅର କ'ଣ ସବୁ ଛାଡ଼ି ଆସିଥିବା ଔଷଧ ଘେନି ପହଞ୍ଚିଲେ। ଏମାନେ ଗାଡ଼ି ଫେଲ୍ ହୋଇଥିବା କଥା ଘରେ ଜଣାଇ ଥିବେ।

ରାତି ହେଇ ଆସିଲା। ମିନି ତା'ନଣନ୍ଦ ରବି ବାବୁଙ୍କ ଘରୁ ବିଦାୟ ହୋଇ ବାହାରିଲେ। ମିନି ସମସ୍ତିଙ୍କୁ ଜୁହାର ହେଲା। ଶାଶୁ ବୋହୂ ନଣନ୍ଦ, ମିନି ତା ପିଲାଙ୍କୁ ନଣନ୍ଦ ଦିଅରଙ୍କୁ ବିଦାୟ ଦେଲେ। ଷ୍ଟେସନ୍ ଘରେ ବସିଥାଏ, ଗାଡ଼ି ଆସିଲା। ଦୁଇ ଜଣ ଦିଅର ନଣନ୍ଦ ମିନି ତା'ଛୁଆ ବସିଲେ। ଟିକୁନି

ପଚାରୁଥାଏ, ଦାଦା ଆମେ କୁଆଡ଼େ ଯାଉଛେ ? ଆମେ ପରା କଟକ ଯାଉଛେ । କାହା ପାଖକୁ ? ବାପାଙ୍କ ପାଖକୁ, ବାପା କ'ଣ କଟକରେ ଅଛନ୍ତିକି ? ହଁ । ଏମିତି କେତେ କଥା ଟିକୁନି ଗପୁଥାଏ । ଦାଦାମାନେ ତା'ସଙ୍ଗେ ବହୁ କଥା ହଉଥାନ୍ତି । ଏମାନେ ସବୁ କଟକରେ ପହଞ୍ଚିଲେ । ପାଖରେ ଗୀତୁ ବାବୁଙ୍କ ଘରେ ପହଞ୍ଚିଲେ । ହେଲେ ଟିକୁନି ସେତେବେଳକୁ ଶୋଇ ପଡ଼ିଥାଏ । ଗୀତୁବାବୁଙ୍କ ଘରେ ଶୋଇଲା । ଖାଲି ଖାଇବାକୁ ତାକୁ ବଡ଼ କଷ୍ଟ । ମିନିନଣନ୍ଦ ତା'ହଷ୍ଟେଲ୍‌କୁ ଗଲା । ମିନି ତା'ସ୍ୱାମୀ ଗୀତୁ ବାବୁଙ୍କ ଘରେ ଖିଆ ପିଆ କରି ସମସ୍ତିଙ୍କଠାରୁ ବିଦାୟ ହୋଇ ବାହାରିଲେ । ମିନିବାପା ଗୀତୁ ବାବୁଙ୍କ ଘରେ ବସିଥିଲେ । ଗୀତୁବାବୁଙ୍କର ତିନୋଟି ଝିଅ, ଗୋଟିଏ ପୁଅ । ଗୀତୁବାବୁଙ୍କ ଭାଇ ବାହାହବା ଅଳ୍ପଦିନ ହୋଇଥାଏ । ଦୁଇ ଯାଆ ଆଉ ବଡ଼ ନଣନ୍ଦ ଥାନ୍ତି । ସେ ବିଧବା । ତାଙ୍କର ଗୋଟିଏ ପୁଅ ଥାଏ । ସେ ପୁଅ ପଢୁଥାଏ । ତାଙ୍କୁ ସମସ୍ତେ ଦେଇ ଡ଼ାକନ୍ତି । ଦେଇ ପ୍ରାୟ ସବୁ କାମ କରନ୍ତି । ରନ୍ଧାବଢ଼ା, ଭାଇମାନଙ୍କ କଥା ବୁଝନ୍ତି । ବୋହୂଦିହେଁ କାମ କରନ୍ତି ସତ, ଆରାମ୍‌ରେ ଥାନ୍ତି । ରାତି ଦଶଟାରେ ଗାଡ଼ିରେ ବସିବାକୁ ବାହାରିଲେ । ମିନିବାପା ପାଖରେ ଥାନ୍ତି । ଫାଷ୍ଟ କ୍ଲାସ୍ କୁପେ । ଦୁଇଟି ବେଡ୍ । ମିନି ସାନଦିଅର ପହଞ୍ଚିଲେ । ମିନିବାପା ଝିଅ ପାଖେ ବସି କଥା କହୁଥାନ୍ତି ଦୁଃଖ ସୁଖ, ମୁଁ ଏହି ରାତିରେହିଁ ଘରକୁ ଯିବି । ତୋ ବୋଉକୁ କହିବି ସବୁ କଥା । ସେ ଚାହିଁ ବସିଥିବ । ସୁମନ ଦୂରକୁ ଗଲା ତମେମାନେ ମଧ୍ୟ ଦୂରକୁ ଚାଲିଯାଉଛ । ବୋଉ ମନ ଖରାପ କରୁଛି । ହଉ ଭଗବାନ ତୁମମାନଙ୍କୁ ଘଣ୍ଟି ଘୋଡ଼ାଇ ରଖିଥାନ୍ତୁ । ଚିଠି ଲେଖୁଥିବୁ । ମୁଁ ତୋବୋଉ ପାଖରେ ଥାଇ ଚିଠି ଦେବି । ସୁମନକୁ ଚିଠି ଦେବି । ସୁରେଶଟି ପଢ଼ିବା କଥା ବୁଝିବି । ସୁଧୀରଟି ଘରକାମରେ ବ୍ୟସ୍ତ । ମୁଁ ତ କଟକରେ ରହିଲି । ମିନିସ୍ୱାମୀ ମଧ୍ୟ ତାଙ୍କ ସାଙ୍ଗ ସାଥୀମାନଙ୍କ ସହ ବାହାରେ ଗପସପ କରୁଥାନ୍ତି । ଷ୍ଟେସନ୍‌କୁ ତାଙ୍କ ସାଙ୍ଗମାନେ ଆସିଥିଲେ । ଗାଡ଼ି ଛାଡ଼ିବା ସମୟ ହେଲା । ମିନିସ୍ୱାମୀ ଗାଡ଼ି ଭିତରକୁ ଆସିଲେ । ମିନିବାପା ଓହ୍ଲାଇଲେ ।

— ୧୬ —

ପୁଅ ଟିକୁନି ଶୋଇପଡ଼ିଥିଲା । ପୁଅ ଝିଅ ଶୋଇଲେ ମିନିର ଖାଲି ମନେ ପଡ଼ିଗଲା ବୋଉ କଥା, ବାପାଙ୍କ କଥା । ଏଇ ରାତିରେ ବାପା ଯିବେ ବୋଉ ପାଖକୁ । ବୋଉ କେତେ କଥା ପଚାରିବ । ବାପା ସବୁ କହିବେ । ବୋଉ ଆଖିରୁ ଲୁହ ଢ଼ାଳିବ । ଭାଇ ମଧ୍ୟ ଏତେ ଦୂରରେ ରହିଲା । ତାକୁ ଏ ପର୍ଯ୍ୟନ୍ତ କୁଆଡ଼େ ଆଖି ଆଗରୁ ଛାଡ଼ି ନଥିଲେ । ଏକାବେଳକେ ବମ୍ବେକୁ ଚାଲିଗଲା । ସବୁକଥା ବୋଉ ବୁଝୁଥିଲା । ବୋଉ କଥାକୁ ବଡ଼

ଖାତିରି ତାର, ବୋଉକୁ ନପଚାରି କିଛି କରିନାହିଁ। ଏମିତି ଭାବୁଥାଏ। ରେଳଗାଡ଼ି ଖୁବ୍ ଜୋର୍‌ରେ ଚାଲିଥାଏ। କୁଆଡ଼େ ଦୁହେଁ ଶୋଇପଡ଼ିଲେ। ପାହାନ୍ତା ହୋଇ ଆସିଲା। ନିଦ ଭାଙ୍ଗିଗଲା। ଟିକୁନି ଉଠିଲା, ବୋଉ ବୋଉ ଲୋ, ବାଣୀ କାହିଁ? ବାଣୀ କୁଆଡ଼େ ଗଲା? ବାଣୀ ବାଣୀ କହି ଭୋରୁ



ଭୋରୁ ଖୋଜି ପକାଇଲା ଟିକୁନି। ବାପା ପାହାଡ଼ ଜଙ୍ଗଲ ପର୍ବତ ଦେଖାଇ ଭୁଲେଇ ଦେଲେ। ମିନି ଚିନ୍ତା କଲା, ଟିକୁନିକୁ ସେ କିପରି ସମ୍ଭାଳିବ? ସେତ ସମସ୍ତିଙ୍କୁ ଝୁରିବ। କିପରି ତାକୁ ସବୁ ଭୁଲାଇବ। ସକାଳ ହେଲା। ନିତ୍ୟକର୍ମ ସାରି ଜଳଖିଆ ସଇଲା। ପୁଣି ବାପା ପୁଅ ମା' ଝିଅ ଗାଡ଼ି ବାହାରକୁ ଚାହିଁ କେତେ କେତେ ପ୍ରାକୃତିକ ଦୃଶ୍ୟ ଦେଖନ୍ତି। ମିନି ସ୍ୱାମୀ ପଢ଼ାପଢ଼ିରେ ଲାଗିଯାନ୍ତି ତ, ବାହାରୁ ଅନେକ ଦୃଶ୍ୟ ଦେଖୁଥିବା ବେଳେ କେତେ ନଜାଣିଥିବା କଥା ଦେଖାଇ ବୁଝାନ୍ତି। ଆଠଟା ବେଳେ ହାଓଡ଼ାରେ ଗାଡ଼ି ବଦଳାଇବା ବେଳେ ମିନିସ୍ୱାମୀଙ୍କର କ୍ଲାସ୍‌ମେଟ୍ ଏମାନେ ଯିବାର ଜାଣି ଭେଟିବାକୁ ଆସିଥିଲେ। ସେ ଜଣେ ଲେଡ଼ି ଡ଼ାକ୍ତରାଣୀ। ସେ ଓହ୍ଲାଇଲେ, ଗାଡ଼ି ଛାଡ଼ିଲା ହାଓଡ଼ା ଷ୍ଟେସନ୍। ସେ ଦିନକ ରାତିକ ଗାଡ଼ିରେ କଟିଲା। ତା'ପର ଦିନ ରାତିରେ ଦିଲ୍ଲୀରେ ପହଞ୍ଚିଲେ ଏତେ ଦୂରବାଟ ମିନି କେବେ କୁଆଡ଼େ ଯାଇ ନଥିଲା। ପୁଅ, ଝିଅଙ୍କୁ ଧରି ସ୍ୱାମୀସାଙ୍ଗରେ ଏତେ ଦୂରକୁ ଆସିଲା। ତାକୁ ଖୁବ୍ ସୁଖ ଲାଗୁଥିଲା। ହେଲେ କୋଉଠି ଏଯାଏଁ ଠିକଣା

ଜାଗାରେ ପହଞ୍ଚିନାହିଁ। ପିଲାଟିମାନଙ୍କୁ କିପରି ପାଳିବ ଏହାହିଁ ଭାବୁଛି। ଦୁଇଦିନ ଗାଡ଼ିରେ ରହଣିପରେ ତିନି ଦିନ ରାତିରେ ଦିଲ୍ଲୀରେ ପହଞ୍ଚିଲେ।

ଦୀପାବଳୀ ରାତିରେ ଧାଡ଼ି ଧାଡ଼ି ଦୀପାଳି, ମହମବତି ଜଳୁଥାଏ। ଷ୍ଟେସନ୍‌ରେ ଓହ୍ଲାଇଲା ବେଳକୁ ମିନିକୁ ବଡ଼ ଆଶ୍ଚର୍ଯ୍ୟ ଲାଗୁଥାଏ। ଏପରି ଏତେଦୀପ କୋଉଠି ସେ ଦେଖି ନଥିଲା। ଷ୍ଟେସନ୍‌କୁ ଅଫିସ୍ କର୍ମଚାରୀ କେତେକ ଆସିଥିଲେ, ଜିପ୍‌ରେ ଡ୍ରାଇଭରକୁ ଧରି। ହୁଏତ ରାତି ଆଠଟା ହବ ପ୍ରାୟ। ସାହେବଙ୍କୁ ସଲାମ, ବିବିଜୀଙ୍କୁ ସଲାମ କରି ଜିନିଷ ପତ୍ର ଗାଡ଼ିରୁ ନେଇ ଜିପ୍‌ରେ ରଖିଲେ। ମିନି ତା'ସ୍ୱାମୀ ପିଲାଙ୍କୁ ଧରି ଆଗରେ ବସିଲା। ପଛରେ ଅନ୍ୟମାନେ ବସିଲେ। ଡ୍ରାଇଭର୍ ଜିପ୍ ଚଳାଇଲେ। ଦିଲ୍ଲୀ ସହର ସୁନ୍ଦର ଦିଶୁଥାଏ। ଜିପ୍ ଖୁବ୍ ଜୋର୍‌ରେ ଡ୍ରାଇଭର୍ ଚଳାଇଥାଏ। ରାସ୍ତାରେ କିଛି ଭିଡ଼ ନଥାଏ। ଓସାରିଆ ରାସ୍ତା। ଦୁଇ ପାଖେ ବଡ଼ ବଡ଼ ଗଛ। ରାତିରେ ଗଛ ଚିହ୍ନି ହଉ ନଥାଏ। କାର୍ତ୍ତିକ ମାସ ଦୀପାବଳୀ। ଶୀତ ଖୁବ୍ ଜଣା ପଡୁଥାଏ। ଷ୍ଟେସନ୍‌ଠାରୁ ମାଲବ୍ୟ ନଗର ଗଲେ। ବସା ଘରେ ପହଞ୍ଚିଲେ। ଟିକୁନି ସେତିକି ବେଳକୁ ଶୋଇପଡ଼ିଥିଲା। ବାହାଦୁର ଟିକୁନିକୁ କାଖେଇ ନେଇଗଲା। ସେ ରାତିରେ, ପାଖରେ ଜଣେ ସାଙ୍ଗ କର୍ମଚାରୀ ଥିଲେ, ସେ ଖାଦ୍ୟ ପଠାଇଥିଲେ। ଖାଇଥିଲେ। ଟିକୁନି ଆଉ ଝିଅଟି ଶୋଇପଡ଼ିଲେ। ମିନିକୁ କେମିତି କେମିତି ଲାଗୁଥାଏ। ସକାଳ ହେଲା। ବାହାଦୁର ପୁଣି ରୋଷେଇପାଇଁ କୋଇଲା ଚୁଲି ଆଦି ରାତିପାଇଁ ଯୋଗାଡ଼ କଲା। ତା'କାମକୁ ଚାଲିଗଲା। ଘରେ ଖାଇପିଇ ପନ୍ଦର ଟଙ୍କା ନେଇ ଦିନ ଦଶଟାଠାରୁ ସଞ୍ଜ ପାଞ୍ଚଟା ପର୍ଯ୍ୟନ୍ତ ବାହାରେ କାମକରି ପଚାଶ ଟଙ୍କା ପାଏ। ସକାଳ ଭୋରୁ ଉଠି କ୍ଷୀରବାଲାଠୁଁ କ୍ଷୀର ରଖେ। ଖରକା ଝାଡୁଆ କରିସାରି କୋଇଲା ଚୁଲି ଧରାଇ ବାହାର ବାରଣ୍ଡାରେ ଖରାରେ ପିଲାଙ୍କୁ ବସାଇଦିଏ ଖଟିଆ ପକାଇ ଦେଇ। ବହୁତ ଶୀତ। ଗରମ ପାଣିରେ ମିନି ପିଲାଙ୍କୁ ଗାଧୋଇଦେଇ ନିଜେ ଗାଧୁଏ। ବାହାରେ ଖରାରେ ବସେ। ବାହାଦୁର ଯାଏ। ମିନିସ୍ୱାମୀ ଅଫିସ୍ ଚାଲିଯାଆନ୍ତି। ଟିକୁନି ସାରାଦିନ ଚଗଲା ହୁଏ। ବାହାରେ ଖେଳେ। ପାଣି ଯାହା ଡ୍ରମ୍‌ରୁ ସାରି ଦିଏ। କେତେବେଳେ ଭଉଣୀକୁ ଖେଳାଏ ତ କେତେବେଳେ ମାରେ। ପଡ଼ିଶାରେ ସିନ୍ଧି ଘର ତିନୋଟି ଝିଅ, ଟିକୁନିକୁ ଡ଼ାକନ୍ତି, ଖେଳାନ୍ତି।

ଏଇମିତି ଦିଲ୍ଲୀ ରହଣି ଦୁଇମାସ ବିତିଗଲା। ମିନିର ଦିନେ ପେଟ କ'ଣ ହେଲା। ପେଟ ବଥା ସେମିତି ହଉଥାଏ, ମିନି ନିୟମିତ କାମଦାମ ଖିଆପିଆ କରୁଥାଏ। ତିନି ଚାରି ଦିନ ଗଲା। ପାଞ୍ଚଦିନ ବେଳକୁ କଷ୍ଟ ବେଶି ହେଲା। ଡାକର ଆସି ନଥାଏ। ଶୀତ ମଧ ଖୁବ୍ ପଡ଼ିଥାଏ। ପେଟ

ବ୍ୟଥା ପାଞ୍ଚ ସାତ ଦିନ ପୂର୍ବରୁ ମିନି ପଡ଼ିଯାଇଥିଲା। ଟିକୁନି ବେଳେ ବେଳେ ମାଟି ଖାଏ। ଟିକୁନିକୁ ଗୋଡ଼େଇ ଗଲା ଝିଅକୁ କାଖରେ ଧରି, ଟିକୁନି ଦଉଡ଼ି ପଳାଇଲା, ମିନି ବାଁ କଡ଼ୁଆ ପେଟମୋଡ଼ି ପିଟି ହେଇ ପଡ଼ିଗଲା। ଝିଅଟି ନିରାପଦରେ ରହିଗଲା। ମିନିକୁ କଷ୍ଟ ହେଲା କିଛି ସମୟ। ତା'ପରେ କିଛି ଆଉ ସେ ଜାଣିପାରିନି। ଚତୁର୍ଥ ବା ପଞ୍ଚମ ଦିନ ବେଳକୁ ମିନିକୁ ଖୁବ୍ କଷ୍ଟ ହେଲା। ସେ ସଞ୍ଜ ବେଳକୁ ଶୋଇଛି। ବାହାଦୁର କେତେବେଳେ ଆସିବ, ଅପେକ୍ଷା କରିଛି। ଟିକୁନିକୁ କହୁଛି, ମୋ ଦେହ ଭଲ ଲାଗୁନି, ତୁ ଝିଅ ପାଖରେ ରହ ମୁଁ ଶୋଇଛି, ବାହାଦୁର ଆସିଲେ କହିଦବୁ। ଟିକୁନି ଶାନ୍ତଶିଷ୍ଟ ହୋଇ ଚିନ୍ତିତ ହେଲାପରି ଜଗି ରହିଲା। ବାହାଦୁର ଯେମିତି ଆସିଲା, କହିଲା, ବାହାଦୁର, ମମିଜୀକି ତବିୟତ ଖରାବ୍ ହେ। ମମି ଶୋ ରହି ହେ। ବାହାଦୁର କହିଲା, କ୍ୟା ହୁଆ ବିବିଜୀ? ଆପ୍‌କି ତବିୟତ୍ ଖରାବ୍ ହେ? ମିନି କହିଲା, ମୋ ଦେହ ବହୁତ ଖରାପ। ଯାଉଛି, ସାହେବଙ୍କୁ ଫୋନ୍ କରିବି କହି ବାହାଦୁର ଫୋନ୍ କରିବାକୁ ଗଲା। ସାହେବଙ୍କୁ ଫୋନ୍‌କରି ଫେରି କହିଲା ସାହେବ ଆସୁଛନ୍ତି। ଜିପ୍ ଧରି ଡ୍ରାଇଭର୍ ଧରି ଆସିଲେ। ମିନିକୁ ପଚାରିଲେ କଣ, ଦେହ କ'ଣ ଖରାପ ହେଲା? ମିନି ପେଟର ଯନ୍ତ୍ରଣା କହିଲା। ଲେଡ଼ି ଡ଼ାକ୍ତରଙ୍କ ପାଖକୁ ମିନିକୁ ନେଇଗଲେ। ମିନିକୁ ପରୀକ୍ଷା କରି ଡ଼ାକ୍ତରାଣୀ ଜଣାଇଦେଲେ ମିନିର ଆବରସନ୍ ହୋଇଯାଇଛି ତିନିମାସ ଭିତରେ। ଆସନ୍ତାକାଲି ଡ଼ାକ୍ତରଖାନାରେ ମିନି ଜଏନ୍ କରିବ। ମିନିସ୍ୱାମୀ ମିନିକୁ ଧରି ଫେରିଲେ। ରାତିକ ଘରେ କଟାଇ ପରଦିନ ସକାଳେ ଡ଼ାକ୍ତର ଖାନାକୁ ନେଇକରି ଯିବେ। ବଡ଼ ଚିନ୍ତାରେ ରାତିକ କଟାଇଲେ। ରାତି ପାହିଲେ ମିନି ହସ୍‌ପିଟାଲ୍‌ରେ ଜଏନ୍ କରିବ। ପିଲା ଦୁଇଟି ଏକାକୀ। ମିନିସ୍ୱାମୀ ଅଫିସ୍ ଯିବେ। ପିଲା ଦୁଇଟିକୁ ବାହାଦୁର ଜିମା କରିବାକୁ ହବ। ବାହାଦୁର ଦିନରେ ରହେନି। ସଞ୍ଜ ପାଞ୍ଚଟାକୁ ଆସିବ। ମିନିତ ଅଚେତା ପରି ରହିଯାଇଥିଲା। ତା'ପରଦିନ ମିନି ଡ଼ାକ୍ତରଖାନା ଗଲା। ସେଠି ରହିଲା। ସେଦିନ ତା'ର ପେଟ ସଫା କରାଗଲା। ପିଣ୍ଡୋ ଜଣେ ବଡ଼ ଡ଼ାକ୍ତରାଣୀ। ଅନେକ ଗୁଡ଼ିଏ ଡ଼ାକ୍ତରାଣୀ ମୁହଁରେ ନାକରେ କନା ବାନ୍ଧି ସବୁ ଠିଆ ହୋଇଛନ୍ତି। ମିନିକୁ ଷ୍ଟ୍ରେଚର୍‌ରେ ନିଆଗଲା। କୁଆଡ଼େ ଯାଉଛି ସେ ବୁଝି ପାରୁନଥିଲା। ପରେ ଗୋଟେ ବଡ଼ ରୁମ୍‌ରେ ସେମାନଙ୍କୁ ଦେଖିଲା। ପାଖରେ ନିଜର ଜଣେ କିଏହେଲେ ନାହାନ୍ତି। ଅନେକ ପୁରୁଷ ଲୋକ ପାଟିରେ କନାପଟି ବାନ୍ଧି ଠିଆ ହୋଇଛନ୍ତି। ମିନିକୁ ଗୋଟେ ଟେବୁଲ୍‌ରେ ଶୁଆଇ ଦିଆଗଲା। ଗୋଡ଼ ଦୁଇଟି ଯେମିତି ଏପାଖ ସେପାଖ ହବନି ପାଦର ଶେଷ ଭାଗ ନେଡ଼ି ଦୁଇଟି, ଦୁଇଟି ଗିନାଭଳି ଯାଗାରେ ଠିକ୍‌କରି ରଖାହୋଇଥାଏ, ଗୋଡ଼ ଯେମିତି ହଲଚଲ ନହବ। ମିନିର ଅଣ୍ଟା ତଳକୁ ଗୋଟେ ଇଞ୍ଜେକ୍ସନ ଡ଼ାକ୍ତର

ଦେଲେ। ମିନି ବୁଝି ପାରୁ ନଥାଏ। ଭଲ କରି ହିନ୍ଦୀ କଥା କହିପାରୁ ନଥାଏ। ବୁଝିବା ମଧ୍ୟ କଷ୍ଟକର ହଉଥାଏ।

ମୁଣ୍ଡକରକୁ ହାତକୁ ଧରି ପୁରୁଷଲୋକମାନେ, ଗୋଡ଼କରକୁ ସ୍ତ୍ରୀଲୋକମାନେ ଠିଆ ହୋଇଥାନ୍ତି। ମିନିର ଗୋଡ଼ ପର୍ଯ୍ୟନ୍ତ କାଲୁଆ ହୋଇଯାଇଥାଏ। ମିନି ଏମିତି ଟିକେଟିକେ ଚିତ୍କାର କଲାବେଳକୁ କୋଇ ବାତ୍ ନେହିଁ, ବିବିଜୀ କୁଁୟ ଘବରାତେ ହେଁ? ଲେଡ଼ିଡ଼ାକ୍ତର ପିଣ୍ଡୋ ପାଞ୍ଚ ମିନିଟ୍ ଭିତରେ ସବୁକାମ ସାରିଦେଲେ। ଲୁଗାପଟା ଭଲକରି ପିନ୍ଧାଇ ଦେଇ ବେଡ୍‌କୁ ଆଣି ଷ୍ଟ୍ରେଚର୍‌ରେ ଛାଡ଼ିଦେଲେ। ଡ଼ାକ୍ତରଖାନାରେ ଯେମିତି ରହିଲା, ଡ଼ାକ୍ତରମାନେ କହିଲେ, ଏଠି ଅନେକ ଚୋରି ହୋଇଯାଉଛି। ତେଣୁ ହାର ଚୁଡ଼ି ପ୍ରଭୃତି ଅଳଙ୍କାର ଗୁଡ଼ିକୁ ଘରକୁ ପଠାଇଦିଅ। ମିନିର ହାର, ଅଳଙ୍କାର ସବୁ ବାହାର କରିଦେଲେ। ସଫା ପରିଷ୍କାର ସେମିଜ୍‌ଟାଏ ପିନ୍ଧାଇ ଦେଲେ। ନର୍ସମାନେ କହିଲେ, କିତନି ଅଛି ଲଗ୍‌ତି ହେଁ, ଦେଖୋ ତୋ। ଆଉ ଦିଜଣ କହିଲେ, ବଡ଼ି ଅଛି ଲଗ୍‌ତି ହେ। ବିଲ୍‌କୁଲ୍ ହମାରୀ ବାତ୍ ସମଝ୍‌ତି ନେହିଁ। ତୁମ୍ କ୍ୟା ବେଙ୍ଗାଲୀ ହୋ? ମିନି ମୁଣ୍ଡ ନାଡ଼ିଲା। ଔର୍ କ୍ୟା? ମିନି କହିଲା, ଓଡ଼ିଆ। ଉଡ଼ି! ନର୍ସ ମିନିର ଅଣ୍ଟାତଳକୁ ଗୋଟେ ଇଞ୍ଜେକ୍‌ସନ୍ ଦବାକୁ ଆସିଲା, ମିନି ସେ ଇଞ୍ଜେକ୍ସନ୍ ଦିଆଇଦେଲାନି। ସେ ନର୍ସଟା ମିନି ଉପରେ ଖୁବ୍ ରାଗିଯାଇଥିଲା। ମାଡ଼ଦବାକୁ ହାତ ଦେଖାଇଲା। ମିନି ହାତରେ ଦବାକୁ ହାତ ଦେଖାଇଲା, ନର୍ସତ ଅଣ୍ଟାତଳକୁ ଦବ। ମିନି ଡ଼ରରେ ନାହିଁ ନାହିଁ କଲା। ସେ ପଳାଇଲା। ଅନ୍ୟ ପଡ଼ୋଶୀ ରୋଗୀମାନେ ହସିଲେ, ବିଚାରୀ ଡ଼ରଯାତି ହେ। ମିନି ତା'ବାଳ କୁଣ୍ଡାଇ ନଥାଏ। ସେ ନର୍ସ ଆସିଲା, ଚିତ୍କାର କଲା— ଏ ଉଡ଼ି, ତୁମ୍ଭାରେ ଶିର୍‌ମେ କ୍ୟା ହୁଆ? କେଁୟା କଙ୍ଘୀ ନହିଁ କି? ମିନି କମ୍ବଳ ଘୋଡ଼ାଇ ହୋଇ ଶୁଣୁଥାଏ। ମିନି ଭାବିଲା କାହାକୁ କହୁଛି? କାହାକୁ କହୁଛି ସେ ବୁଝି ପାରୁ ନଥାଏ। ପୁଣି ପଡ଼ୋଶୀମାନେ ହସିବାକୁ ଲାଗିଲେ — ବିଚାରୀ, ତବୀୟତ୍ ଜ୍ୟାଦା ଖରାବ୍ ହେ। କୁଛ ସମଝ୍‌ତି ନହିଁ। କ୍ୟା କରେଗି ବିଚାରୀ? ଶୀତ ଖୁବ୍ ପଡ଼ିଥାଏ। ମିନି ଏ ଅବସ୍ଥାରେ ବାହାରେ ବସି ମୁଣ୍ଡ କୁଣ୍ଡାଇବ କ'ଣ, ପିଲାଙ୍କ କଥା ବରାବର ଭାବୁଛି। ବହୁତ କାନ୍ଦୁଛି। ଟିକୁନି ଥରେ ଏ'ଭିତରେ ବୋଉକୁ ଦେଖିକରି ଯାଇଛି। ଟିକୁନି ମଇଳା ମଶିଆ ଦିଶୁଛି। ଶୀତ ଦିନ। କିଏ ଗାଧୁଆ ପାଧୁଆ କରିଦେବ? ଲୁଗାପଟା କିଏ ସଫା କରିଦବ? ଏମିତି ଭାବି ରାତିକ ଶୋଇଲା। ତା'ପରଦିନ ସକାଳୁ ଉଠି ନିତ୍ୟକର୍ମ ସାରି ମୁଣ୍ଡ କୁଣ୍ଡାଇଲା। ଭଲ ପୋଷାକ ପତ୍ର ପିନ୍ଧିଲା। ଅନେକ ରୋଗୀସବୁ ବାହାରେ ବସି ଖରା ପୁଉଁଥାନ୍ତି। ଗପସପ ହଉଥାନ୍ତି। ମିନିକୁ ଡ଼ାକିଲେ, ଆଇୟେ, ଆଇୟେ ବହେନ୍‌ଜୀ, ଅକେଲି ବୈଠି କ୍ୟା କରେଗି?

ହମାରୀ ବୋଲି ଶିଖୋ। ହମାରେ ସାଥ ବାତେଁ କରୋ। ମିନି ସେମାନଙ୍କ ପାଖକୁ ଗଲା। ବହୁତ ଶୀତକୁ ଖରାଟା ଭଲ ଲାଗୁଥାଏ। ଇତନା ସିଧୀହେ ବିବିଜୀ ତୁମ୍‌ନେ। କିଛି କିଛି ମିନି, ବୁଝିପାରୁଛି। ଓଲଟି କହିବାକୁ ବଡ଼ ସଙ୍କୋଚ ବୋଧହଉଛି। କିଛି ଭୁଲ୍ ହେଇଗଲେ ହସିବେ ଏମାନେ। ଅପମାନ




ଲାଗିବ ମିନିକୁ। କ'ଣ କରିବ, ବଡ଼ ଅଡୁଆରେ ପଡ଼େ। ଏମିତି ଭାବୁ ଭାବୁ ମିନିର ସ୍ୱାମୀ ଆଉ ଜଣେ ବାବୁଙ୍କ ସ୍କୁଟର୍‌ରେ ପହଞ୍ଚିଲେ, ମିନିର ବେଡ୍ ପାଖରେ। ମିନିକୁ ଦେଖିଲେ, ବାହାରେ ଅନେକ ସ୍ତ୍ରୀଲୋକମାନେ ବସିଛନ୍ତି ମିନିର ଚାରିପାଖେ ମିନିକୁ ମଝିରେ ରଖି ତା'ଠାରୁ କ'ଣ କଥା ଶୁଣିବା ଲାଗି। କିଏ ଜଣେ କହିଲା, ବାବୁଜୀ ଆଗୟେ, ଇନ୍‌କା ବାବୁଜୀ। ମିନି ଧୀରେଧୀରେ ତା'ବେଡ୍ ପାଖକୁ ଚାଲିଲା। ଏମାନଙ୍କର ପରୀକ୍ଷାରୁ ଫେଲ୍ ମାରି। ମିନିସ୍ୱାମୀ ପଚାରିଲେ, କ'ଣ ତୁମକୁ ଏମିତି ଘେରି ଥିଲେ ତୁମର ପାଖ ପଡ଼ୋଶୀ ମହିଳାମାନେ ? ତୁମେ ସେମାନଙ୍କ ସଙ୍ଗେ କଥା କହି ପାରୁଥିଲ ? ମିନି କହିଲା—ନାଁ କହିପାରୁ ନଥିଲି। ଶୀଘ୍ର ଶୀଘ୍ର କହିଶିଖ। ଆଉ କେତେଦିନ ଏଇମିତି ଚଳିବ ? ଟିକୁନି ଏ ଭିତରେ ବହୁତ ହିନ୍ଦୀକଥା ଶିଖିଗଲାଣି। ଭଉଣୀ ସଙ୍ଗେ ବାହାଦୁର ସଙ୍ଗେ କହି ଚାଲିଛି। ମିନି ଡ଼ାକ୍ତରଖାନାରୁ ଘରକୁ ଆସିଲା। ମିନି ଡ଼ାକ୍ତରଖାନାରେ ଥିବା ବେଳେ ଘରପାଖ ପଡ଼ୋଶୀମାନେ ବାହାଦୁରକୁ ପଚାରିଲେ, ବିବିଜୀ କହାଁ ହେ ? ବାହାଦୁର କହିଥିଲା ବିବିଜୀ ବିମାର୍ ହୋଗୟି ହେ। ମିନିକୁ ପୂର୍ବ ପରି ପିଲାଟିମାନଙ୍କୁ ଧରି ଦିନସାରା ଏକୁଟିଆ ରହିବାକୁ ପଡ଼େ। ସଂଜକୁ ବାହାଦୁର ଆସେ।

ଦିନକର ସଂଜ୍ଞ ପୂର୍ବରୁ ମିନି ତା ଝିଅକୁ ଧରିଛି, ଟିକୁନି ପାଖରେ ଅଛି। ଦାଣ୍ଡରାସ୍ତାକୁ ଚାହିଁଛନ୍ତି ମା ପୁଅ। ଗୋଟେ ବଳଦ କି ଗାଈ ମିନି ଭଲ କରି ଦେଖିନାହିଁ, ଦି ତିନି ଜଣ ଲୋକ ତା ପଛରେ ଧାଇଁଛନ୍ତି। ବଳଦଟି ଧାଇଁଛି। ଜଣେଲୋକ ତା ଲାଞ୍ଜଟା ଧରିଛି। ତିନିଜଣ ଲୋକ ଆଉ ବଳଦ, ସବୁ ଦଉଡୁଛନ୍ତି। ମିନିକୁ ଏ ଲୀଳା ଦେଖି ବଡ଼ ହସ ମାଡୁଛି। ସେ ଏ ଦୃଶ୍ୟ ଦେଖି ହେଁ ହେଁ ହୋଇ ହସୁଛି। ଟିକୁନି ଦେଖୁଛି। ହାୟରେ କପାଳ! ଦେଖୁ ଦେଖୁ ମିନିଘରେ ବଳଦଟି ପଶିଲା। ମିନି ବସାଘର ଆଗକୁ ରାସ୍ତାରେ ଗୋଟେ ନାଳ। ମିନିଘରକୁ ଠିକ୍ ରାସ୍ତାଟା ସାମନାରେ। ନାଳରେ ସିମେଣ୍ଟର ପଥରଭଳି, ରାସ୍ତାରୁ ଘରକୁ ଆସିବାକୁ ପଟା ପଡ଼ିଛି। ବଳଦଟି ରାସ୍ତା ପାରହୋଇ ଯିବ। କିଛି ବାଟ ପରେ ପୁଣି ପଛମୁହାଁ ହୋଇ ଫେରିଲା। ଲୋକଙ୍କ ହାତରୁ ତା ଲାଞ୍ଜଟା ଛାଡ଼ିଯାଇଥିଲା। ସିଧା ମିନିଘରେ ପହଁଞ୍ଚିଗଲା। ଭିତରେ ପଶିଗଲା। ଟିକୁନି ଚାପିହୋଇ ରହିଗଲା। ମିନି ତା ଝିଅକୁ ଖଟକୁ ଚଢ଼ାଇଦେଇ ପ୍ରାଣ ବିକଳରେ ଟକୁନିକୁ ଧରି ଛିଡ଼ାହୋଇରହିଲା। ତିନିଜଣ ମଣିଷ ଛାନିଆ। ବଳଦ ଯିବାକୁ ବାରି ଆଡକୁ ବାଟ ବନ୍ଦ, କବାଟ ବନ୍ଦ। ବଳଦଟି ପ୍ରାଣ ବିକଳରେ ହଗି ପକାଇଛି। ଲୋକମାନେ ପୂର୍ବପରି ବଳଦର ଲାଙ୍ଗୁଡ ଧରି ଭୟରେ ଧଇଁସଇଁ ହେଇ ଫେରୁଛନ୍ତି। ବଳଦ ତାର ଭୟରେ ଝାଡା ଫେରିଲାଣି। ମିନି ଟିକୁନି ଭୟରେ ଗୋଟାପଣେ ଥରିଥରି ଦମ୍ ମାରୁଛନ୍ତି। ମିନିଝିଅଟି ଢିମା ଢିମା ଆଖି କାଢି ଠିଆହୋଇଛି। ମିନି ଏକଥା ଆଉ କାହାକୁ କହିବ? ରାସ୍ତା ଉପରେ ଯାଉଥିଲା ବଳଦଟି, ମୋରିଘରେ ପଶିବାକୁ ଯୋଗ ଥିଲା! ଭଗବାନଙ୍କ କ'ଣ ବରାଦ? ଭଗବାନ ରକ୍ଷାକଲେ। ଟିକୁନିର କିଛି ହୋଇନି। ନିଜେ ହସିବା ଫଳ ପାଇଗଲାତ? ଚୁପ୍‌ଚାପ୍ ମିନି ତା'ପୁଅ ଝିଅକୁ ଧରି ଖଟଉପରେ ବସିଛି, କବାଟ କିଳିଦେଇ। ବାହାଦୁର ଆସିଲା। କବାଟ ଖୋଲିଲା। ବାହାଦୁର ଆଗରେ ମଧ କିଛି କହିଲାନାହିଁ। ପାଟି ଖୋଲୁନାହିଁ ମିନିର। ହେଲେ କ'ଣ ନହେଲାଟି? ବାହାଦୁର ବାରି କବାଟ ଖୋଲି ଦେଖେତ ଗୋବର ପଡ଼ିଛି। ମା'ଜୀ, ୟେ କ୍ୟା ହେ? ମିନି ଏସବୁ ଘଟଣା କହିଲା, ପୁଣି ହସିଲା। ହେଲେ ହସମାଡୁଛି, କାନ୍ଦମାଡୁଛି, ଦୁଃଖଲାଗୁଛି, କିଏଗୋଟିଏ ପାଖକୁ ନାହିଁ। କବାଟ କିଳି ଘରେ ଛୁଆଙ୍କୁ ଧରି କେତେ ରହିବ? ଏଣୁ ସଞ୍ଜବେଳେ ଟିକିଏ ଛୁଆଙ୍କୁ ଧରି ଦୁଆରେ ଠିଆହୁଏ। ଏକଥା କାହାକୁ କହିବ? କିଏ ଶୁଣିବ? କିଏତ ଦେଖି ନାହିଁ। ଭଗବାନ ତୁମେ କି କଠୋର ସତେ! ଟିକୁନିର ଯେ କିଛି କ୍ଷତି ହୋଇନି ସେପାଇଁ ପୁଣି ଭଗବାନଙ୍କୁ ଆଉ ନିଷ୍ଠୁର କହିବାକୁ ଡ଼ର ଲାଗୁଛି। ତୁମେ ମହାନ୍ ପ୍ରଭୁ! କେତେବେଳେ ବାପା ଆସିବେ, ବୋଉ? ଟିକୁନି ପଚାରିଲା, ମିନି ଉତ୍ତର ଦେଲା, ହଁ ଆସୁଥିବେ ବାପା। ଟିକୁନି ପାଇଁ

ବଡ଼ ଦୟା ହୁଏ ମିନିର। କାହାରି ସାଙ୍ଗରେ ଖେଳିବାକୁ ବୁଲିବାକୁ, ସାଙ୍ଗ ନାହିଁ। ଗାଁ ସିନା ତା'ପାଇଁ ଭଲଥିଲା। ପ୍ରଚୁର ଜାଗା। ଟିକୁନିର ଜେଜେମା ଜେଜେବାପା ତ ବଡ଼ ସାଂଗ ଥିଲେ। ଦାଦା ପିଉସୀ ହଳିଆ ମୂଳିଆ। ଆଉ ଏଠି ଦିଲ୍ଲୀ ସହର। ନାଁ ବଡ଼। ଘରତ ଛୋଟ ଛୋଟ ଦୁଇବଖରା। ବାରି ଅଗଣା, ଉଠା ପାଇଖାନା। ଟିକୁନି ବାରି ପାଖ ନାଳକୁ ପାଇଖାନା ଯାଏ। ଦିନରେ କାମଦାମ ସରିଲେ ମିନି ଝିଅକୁ ଧରି ଶୁଏ। ଟିକୁନିକୁ ନିଦ ହୁଏନି। ପଡ଼ିଶା ଝିଅ ସଙ୍ଗେ ଖରାବେଳେ ଦିନେଦିନେ ଖେଳେ। ପାଠ ପଢ଼ିବା ବୟସ ହୋଇନି। ହେଲେ ଓଡ଼ିଆ ପାଠ ବହି ତା'ର ଅଛି। ମନ ଦଉନି ପଢ଼ିବାକୁ। କିମିତି, କୋଉଁଠି ପଢ଼ିବ, ମିନି ତା'ପାଇଁ ବ୍ୟସ୍ତ ହୋଇ ପଡ଼େ। ବାପା କେତେବେଳେ ଫେରିବେ, ସଞ୍ଜ ହେଲେ ଅନାଇଁ ରହେ ଟିକୁନି। ବାପାତ ଦିନ ନଅ'ରୁ ଯିବେ ଯେ ରାତି ଆଠଟା ବା ନଅଟା ବାଜିବ। ଟିକୁନି ଖାଇକରି ଶୋଇପଡ଼ିଥାଏ। ଝିଅ ଚଣ୍ଡୀ ଯେ ସାକ୍ଷାତ ଚଣ୍ଡୀ। ସଞ୍ଜ ହେଲେ ଛାଡ଼େନି। ଟିକୁନି ଖାଇବା ପିଇବା ବାହାଦୁର ବୁଝେ। ଭଲ ଘିଅରେ ପରଟା ତିଆରିକରି ତାଙ୍କ ଗୁଡ଼ ଦେଇ ଟିକୁନିକୁ ଖାଇବାକୁ ଦିଏ ବାହାଦୁର। ଦିଲ୍ଲୀର ଭୀଷଣ ଶୀତକୁ କଷ୍ଟହୁଏ। କେତେବେଳେ ଫେରିବେ ଭାବୁଥାଏ ମିନି। ପାଖତ ନୁହଁ ଅଫିସ୍। ବସାଘରଠୁଁ ଚାରି ମାଇଲ ଦୂର।

ଦିନକର ସୂର୍ଯ୍ୟକୁଣ୍ଡ ଦେଖିବାକୁ ବାହାରିଲେ ମିନିସ୍ୱାମୀ ତାଙ୍କ କାମରେ। ମିନିକୁ ସେଦିନ ଦେଖାଇବାକୁ ନେଇ ଯାଉଥିଲେ। ବହୁ ଦିନର ସେ କୁଣ୍ଡ।



କୋଉ ଭିତରେ ପାଣି। ବହୁ ପୁରୁଣା। ଆଗେ ଲୋକେ ସେଠି ଗାଧୋଇ ସାରି ସୂର୍ଯ୍ୟ ଦର୍ଶନ କରୁଥିଲେ। ତେଣୁ ତା'ନାମ ସୂର୍ଯ୍ୟ କୁଣ୍ଡ। ପନ୍ଦର କୋଡ଼ିଏ ଏକର ହବ ଜାଗା। ଚାରିକଡ଼େ ପାଉଛ ଅଛି ଆବଡ଼ାଖାବଡ଼ା ହୋଇ। ଖୁବ୍ ଗଭୀର ଯାଏଁ ଓହ୍ଲେଇଯିବାକୁ ହୁଏ। କାହାରିକୁ ଯିବାର ଆଉ ସେଠାକୁ ଦରକାର ନାହିଁ। ଆର୍କେୟାଲଜିବାଲାଙ୍କର ସେଠାକୁ ଯିବା, ପରିଦର୍ଶନ କରିବା, ମରାମତି କରାଇବା। ବାହାରୁ ଯୋଉମାନେ ଆସନ୍ତି, ପୁରୁଣା ସଂସ୍କୃତି ଜାଣିବାକୁ, ସେମାନଙ୍କୁ ଏମାନେ ଦେଖାନ୍ତି। ଯାହା ଯାହା ସେ ବିଷୟରେ ପଢ଼ିଥାନ୍ତି ଜାଣିଥାନ୍ତି, ସେମାନଙ୍କୁ କହନ୍ତି, ବୁଝାନ୍ତି। ସେ ଜାଗାଟା ଦେଖିବାକୁ ବଡ଼ ଭୟଙ୍କର ଲାଗେ।

ଏ ଜାଗା ଦେଖି ଫେରିବାପରେ କିଛିଦିନ ବାଦେ ମିନି ଡ଼ାକ୍ତରଖାନା ଯାଇଥିଲା। ଡ଼ାକ୍ତରଖାନାରୁ ଫେରିବା କିଛିଦିନ ବାଦେ ବାହାଦୁର ଠକିବାକୁ ଲାଗିଲା। ଯେତେ ପଇସା ବଜାରକୁ କ୍ଷୀର ବାଲାକୁ ଦବାକଥା ସବୁ ମିନିଠାରୁ ନେଇ ରଖିପକାଏ। ଦୁଧବାଲାଠୁଁ ବାକି କରିଦିଏ। ଦୋକାନମାନଙ୍କରୁ ବାକି ଆଣେ। ଦୁଧ ବାଲାର ଦେକାନମାନଙ୍କର ଦୁଇମାସ ଭିତରେ ବହୁତ ବାକି କରିଦେଲା। ଦୋକାନୀ ଦୁଧବାଲା ସାହେବଙ୍କୁ ଏକଥା ଜଣାଇଲେ। ମିନି ତା'ସ୍ୱାମୀ ଆଶ୍ଚର୍ଯ୍ୟ ହେଲେ, ଆମଠୁଁ ଟଙ୍କା ନେଇ ବାହାଦୁର କ'ଣ କରୁଛି, ଆଉ ବାହାଦୁରକୁ ପଚାରିଲେ। ବାହାଦୁର ମାନିଗଲା। ଅନ୍ୟାନ୍ୟ ଦୋକାନୀମାନଙ୍କର ଦୁଧବାଲାର ଟଙ୍କା ସାହେବ ଦେଇଦେଲେ। ବାହାଦୁରକୁ ଆଉ ଜଣେ ସାହେବଙ୍କ କର୍ମଚାରୀଙ୍କ ଘରେ ରଖାଇ ତା'ଠାରୁ କେମିତି ଟଙ୍କା ଆଦାୟ କରିବେ ତା ଉପାୟ କଲେ। ବାହାଦୁରକୁ ଘରୁ ବିଦାୟ କଲେ। ମିନିକୁ ପୁଅ, ଝିଅକୁ, ସ୍ୱାମୀକୁ ଧରି ଏକା କାମଦାମ କରିବାକୁ ପଡ଼ିଲା। ରୋଷେଇବାସ, ବାସନଧୁଆ, ଲୁଗାଧୁଆ କରି ପିଲା ଦିଓଟିଙ୍କୁ ସମ୍ଭାଳି ଥାଏ।

ଏଇମିତି ଚାରିମାସ ବିତିଗଲା ଦିଲ୍ଲୀରେ। ସେ ଘରଟାକୁ ବଦଳାଇଲେ। ମାଲବ୍ୟନଗରରୁ ଇଉସୁଫସରାଇ ଯିବାକୁ ପଡ଼ିଲା। ଏଭିତରେ ଝିଅଟି ରୋଗା ଥାଏ। ସେଠି ବଡ଼ ବଡ଼ ଦୁଇଟା ରୁମ୍। ଦି ଘରକୁ ବାଟ ଥାଏ। କବାଟ ନଥାଏ। ବାହାରେ ମସ୍ତବଡ଼ ବାରଣ୍ଡା। ରୋଷେଇ ଘର। ପାଣି ବଡ଼ ଅସୁବିଧା। ଟିଉବ୍‌ୱେଲ୍‌ଟିଏ ଥାଏ। ବହୁତ ଝାଙ୍କିଲେ ଖାଲି ମାଟିପାଣି ଆସେ। ସେ ପାଣି ବାଲ୍‌ଟିମାନଙ୍କରେ ରଖିଲେ ତଳେ ମାଟିପାଣି ବସିଗଲେ ଉପରକୁ ଭଲପାଣି ଛାଣିନେଇ ବ୍ୟବହାର କରନ୍ତି। ସକାଳୁ ଡାଲୁଆ ତିଆରି କରେ ମିନି। ଝିଅଟିକୁ ଡାଲୁଆ ଖୁଆଇଲେ ତା ସ୍ୱାସ୍ଥ୍ୟ ଭଲ ହବ, ଜଣେ ପିଅନ କହିଲା। ଡାଲୁଆମାନେ, ଗହମକୁ ଦର ଦର ଗଡ଼ି କରି ଚୂରାଇଥାନ୍ତି। ଖୁଦ ପରି ଦାନାଗୁଡ଼ିକ।

ତାକୁ ଘିଅରେ ଭାଜିଦିଅନ୍ତି। ତା'ପରେ ପାଣିରେ ସିଝେ। କିଛିସମୟ ଅଳ୍ପପାଣିରେ ସିଝିଲା ପରେ, ଖିର ଚିନିରେ ଖୁରାଭଜି ହୁଏ। ସକାଳୁ ପ୍ରଥମେ ଡାଲୁଆ ରାନ୍ଧି ପୁଅ ଝିଅଙ୍କୁ ଖାଇବାକୁ ଦିଏ। ସାହେବ ଖାଇ ଅଫିସ୍‌କୁ ଯା'ନ୍ତି। ମିନି ଟିକେ ଖାଏ। ତା'କୁ ସେତେ ଭଲ ଲାଗେ ନାହିଁ। ତା'ପରେ ରୋଷେଇ ବସାଏ ମିନି। ସାହେବଙ୍କ ଅର୍ଡ଼ରଲି ପିଅନଟି ଆସେ। ବାରଟାବେଳେ ମିନି ରୋଷେଇ ବସାଇଥାଏ। ଝିଅଟିକୁ ବୁଢ଼ା ପିଅନଟି ପାଖକୁ ଡ଼ାକି ଖେଳାଏ। ମିନି ରାନ୍ଧିସାରି ଟିଫିନ୍ କ୍ୟାରିୟରରେ ରଖି ପିଅନଟିକୁ ଦିଏ। ଭାଗଚାନ୍ଦ ଖାନା ଧରି ଅଫିସ୍ ଚାଲିଥାଏ। ଝିଅକୁ ପୁଅକୁ ଖୁଆଇସାରି ମିନି ଖାଏ। ମିନିକୁ ସତେଇଶ ବର୍ଷ ହବ। ତା'ର ଦୁଇଟି ଦାନ୍ତ ହଲିଲାଣି। ଖାଇବାରେ ବଡ଼ କଷ୍ଟ ହେଉଛି। ଦାନ୍ତ ଏତେ ଜୋର୍‌ରେ ହଲିବା କଥା କାହାକୁ କହିବ ଲାଜ ଲାଗୁଛି। ବଡ଼ କଷ୍ଟରେ ଖାଦ୍ୟ ଖାଏ। ଭାତ ହେଲେ ଖାଏ। ରୁଟି ଖାଇବାକୁ କଷ୍ଟ ହୁଏ। ପ୍ରତିଦିନ ନିୟମିତ ଭାବେ ରୋଷେଇ କରିବ। ଡାଲୁଆ କରିବ। ରାତିରେ ରୁଟି ତିଆରି କରେ। ପିଲାମାନଙ୍କ ଲୁଗାପଟା ଧୋଇବା ଇତ୍ୟାଦି ନିତିଦିନିଆ କାମଗୁଡ଼ିକ କରିବାକୁ ହୁଏ। ଏମିତି ଦୁଇମାସ କଟିଗଲା। କାଶ୍ମୀର ଯିବାକୁ ପଡ଼ିଲା। ଯିବା ପୂର୍ବରୁ ଘରଟିକୁ ଛାଡ଼ିବାକୁ ପଡ଼ିବ। ଘରବାଲା ବୁଢ଼ୀ ବ୍ୟସ୍ତ ହେଇଯିବ ତେଣୁ କାଶ୍ମୀର ଯିବାକଥା କିଛି ଜଣାଇ ନଥାଏ ଘରବାଲାକୁ। ଘରଛାଡ଼ି ଗଲାବେଳକୁ ବୁଢ଼ୀ କାନ୍ଦୁଥାଏ।

— ୧୭ —

ବାବୁଙ୍କ ଜଣେ ସାଙ୍ଗ ନୂଆ ବାହା ହେଇଥାନ୍ତି। ଭଲ ପରିଚିତି ତାଙ୍କ ସହିତ ଥିଲା। ତାଙ୍କ ଘରେ ତାଙ୍କ ମା' ଓ ସ୍ତ୍ରୀ ଥିଲେ। ସେମାନେ ରୋଷେଇ କରିଥିଲେ। ଦିନଟି ସେଠାରେ କଟାଇସାରି ରାତିକୁ ଟ୍ରେନ୍ ଧରିବେ। ପିଲାଙ୍କୁ ଧରି ମିନି ସେଠି ଥାଏ। ଆଠଟା ପୂର୍ବରୁ ଟ୍ରେନ୍ ଧରିବେ। ସାଢ଼େ ସାତଟାରେ ଖିଆପିଆ ସାରି ବାହାରିଲେ। ଗାଡ଼ିରେ ଚଢ଼ିବା ପୂର୍ବରୁ ହନୁମାନ୍‌ଜୀଙ୍କ ମନ୍ଦିରରେ ବୀର ହନୁମାନ୍‌ଜୀଙ୍କୁ ପ୍ରଣାମ କରି ବାହାରିଲେ। ରାତି ଆଠଟାରେ ଗାଡ଼ିରେ ବସିଲେ। ସେକେଣ୍ଡ କ୍ଲାସ୍। ବହୁ ଲୋକ ଯାଉଥାନ୍ତି। ଗୋଟିଏ ଲମ୍ବା ସିଟ୍‌ରେ ପିଲା ଦୁହିଁଙ୍କୁ ଧରି ବସିଲେ। ଶୋଇ ପଡ଼ିବାର କିଛି ସୁବିଧା ନଥାଏ। ପିଲାଙ୍କୁ ଶୁଆଇଦେଇ ମିନି ବସିଲା। ଯା'ଙ୍କୁ ଜଣେ ସାହେବଙ୍କ ସହିତ ଗପିବାର ସୁଯୋଗ ମିଳିଗଲା। ଇଂରେଜିରେ ଗପ। ରାତି ଗୋଟାଏ ଯାଏ ଗପ ଚାଲିଥିଲା। ବଡ଼ ବିରକ୍ତ ଲାଗୁଥାଏ। ବିଚାରୀକୁ ନିଦ ଆସୁନି। ଭଦ୍ର ଲୋକ ସାହେବଙ୍କ ସହିତ ଗପିଗପି କ୍ଲାନ୍ତହୋଇ ଶୋଇପଡ଼ିଲେ। ମିନିକୁ ଅସୁବିଧା ଲାଗିଲା। ପିଲାଙ୍କୁ ସୁବିଧାରେ ଶୁଆଇଦେଇ ତାକୁ ଜାଗା ହେଲାନି କି ନିଦହେଲାନି।



କୋଉଠି ଓହ୍ଲାଇବ, କେତେବେଳେ ଓହ୍ଲାଇବ ଏପରି ଚିନ୍ତାରେ କଟିଲା। ଆଉ ଗୋଟିଏ ଶିଶୁ ପୁତ୍ର ମିନିର ଗର୍ଭରେ ଆଶ୍ରୟ ନେଲାଣି। ଦୁଇମାସ ହେବ। ମିନିକୁ ଏସବୁ କିଛି ଜଣା ପଡୁନି। ସକାଳ ହେଲା। ପଠାଣକୋଟରେ ଓହ୍ଲାଇବାକୁ ହବ। ସୂର୍ଯ୍ୟ ଉଦୟ ହେଉଥାନ୍ତି ଟ୍ରେନ୍‌ରୁ ଓହ୍ଲାଇଲେ। ବାପା, ମା', ପୁଅ, ଝିଅ। ପଠାଣକୋଟ ଜାମ୍ମୁ ବସ୍ ଧରିଲେ। ରାତି ହେଲା। ଜାମ୍ମୁଠି ଖୁବ୍ ଶୀତ। ଜୁନ୍ ମାସ ସମୟରେ ହାଡ଼ଭଙ୍ଗା ଶୀତ। ରାତିରେ କ'ଣ ଗୋଟେ ଟେଣ୍ଡା ତରକାରି, ରୁଟି ଖାଇଲେ। ପିଲାଙ୍କର ପାଟି ଶୀତରେ ଛଡ଼ଛଡ଼ ହେଇଯାଉଛି। କୋଉଠି ଶୋଇବେ ? ବିଛଣା ସେମିତି ଶୀତପାଇଁ ନାହିଁ। ବାହାରୁ ଢଗୁଆଳ ପାଟି କରୁଥାଏ। ତଳେ ଶୁଅ, ଟେବୁଲ୍ ଉବରେ ଶୁଅ ନାହିଁ। ତଳେ ଶୋଇବା ଉପାୟ ନାହିଁ, ବହୁତ ଶୀତ। ଡ଼ାକବଙ୍ଗଳାରେ ବହୁତ ଉଚା ଟେବୁଲ୍ ଗୋଟାଏ ପଡ଼ିଥାଏ। ତା'ରି ଉପରେ ଶୋଇଲେ। ପୁଅକୁ ଝିଅକୁ ଜାକି ଧରି ଶୋଇଲେ। ଏତେ ଉଚା। ପିଲାଙ୍କୁ ଜାବୁଡ଼ି ଧରିଥାନ୍ତି। ନିଦ ତ ଶୀତକୁ ହଉ ନଥାଏ। ଯଥାତଥା ସକାଳ ନହଉଣୁ ଉଠିକରି ଯାହା ବିଛଣା ଟେବୁଲ୍ ଉପରେ ପକାଇଥିଲେ ତାକୁ, ପିଲାଙ୍କୁ ଠିଆ କରିଦେଇ ବିଛଣା ବାନ୍ଧିଦେଲେ। ତେଣେ ଢଗୁଆଳି ପାଟି କଲାଣି, ଉଠିୟେ ସାହବ ଉଠିୟେ। ହଁ ହଁ କହି ରେଡ଼ି ହେଇଗଲେ। ତା'ପରେ ବାହାରିଲେ କାଶ୍ମୀର ଅଭିମୁଖେ। ବସ୍‌ରେ ବସିଲେ। ବସ୍ ଚାଲିଥାଏ। ପିଲା

ଦୁଇଟି ଯାହା ଖାଇଲେ ବାନ୍ତି କରି ପକାଉଥାନ୍ତି। ଦୁଇଟି ପିଲାଙ୍କୁ ଏପାଖେ ଜଣକୁ ସେପାଖେ ଜଣକୁ କୋଳରେ ଜାକି ମିନି ତା'ସ୍ୱାମୀ ବସିଥାନ୍ତି। ଆଗ ସିଟ୍‌ରେ ଜଣେ ମହିଳା ବସିଥାନ୍ତି। ତାଙ୍କସ୍ୱାମୀଙ୍କ ମୁଣ୍ଡରେ ମୁହଁକୁ ମାଡ଼ି ଶୋଇଥାନ୍ତି। ସକାଳୁ ବସିଲେ, ଦିନ ଗୋଟାଏ ହେଇଗଲା ଶ୍ରୀନଗରରେ ଓହ୍ଲାଇଲେ। ପିଲା ଦିହେଁ ବାନ୍ତି କରି କରି କ୍ଳାନ୍ତ ହେଇପଡ଼ିଥିଲେ। ଗୋଟେ କାଠ ଘରକୁ ଓପର ମହଲାକୁ ଉଠି ଉଠି ଗଲେ। ଭଦ୍ରଲୋକ କ'ଣ କଥା ହେଲେ ମିନି କିଛି ଭାବି ପାରୁ ନଥାଏ। ଖରା ମଧ୍ୟ ଟାଣ ଲାଗୁଛି। କ'ଣ କିଛି ଉପାୟ ଦିଶୁ ନଥାଏ। ଗୋଟେ ତମ୍ବୁରେ ରହିଲେ। ତମ୍ବୁ ତାଙ୍କର ସବା ଶେଷରେ ପଡ଼ିଥାଏ। ଚାରିଟା ତମ୍ବୁ ଥାଏ। ଅନ୍ୟ କରରେ ଜଣକିଆ ତମ୍ବୁ ପନ୍ଦରଟା ହବ ପଡ଼ିଥାଏ। ପିଲାଙ୍କୁ ଭୋକ ଜୋର। କ'ଣ ମଗାଇ ଖାଇବାକୁ ଦେଲେ। ପାଣି ଫାଣି କିଛି ନାହିଁ। ଦୋଷୀଟି ଦଣ୍ଡ ପାଇବାକୁ ବାଧଭଳି ଲାଗୁଥାଏ। ପିଲାଏ କ'ଣ ଜଳଖିଆ ଖାଆନ୍ତି! ବହୁତ ଖରାଦିନ, କାଶ୍ମୀର ବୋଲି ଥଣ୍ଡା ସିନା। ପଠାଣ ତିନି ଚାରି ଜଣ ଆସିଲେ ପାଣିଦବାକୁ। ଛିଣ୍ଡା କୋଟ, ଛିଣ୍ଡା ପାଇଜାମା, ଛିଣ୍ଡା ଟୋପି। ଲୁଗାପଟା ସବୁ ମଇଳା, ଅପରିଷ୍କାର। ସେମାନେ ପୁଣି ପାଣି ଦେଲେ ରୋଷେଇ ହବ! ଜନତା ଷ୍ଟୋଭ୍‌ଟିଏ ଥାଏ। ପାଖରେ ରୋଷେଇପାଇଁ ସରଞ୍ଜାମସବୁ ଥାଏ। ମିନିକୁ ଅସୁସ୍ଥ ବୋଧ ହେଉଥାଏ। କଥଣ କିମିତି ଏଠାରେ ଚଳିବାକୁ ହେବ। ପିଲାଙ୍କୁ ଚଳାଇବା କଷ୍ଟ ହେବ। ଟିକୁନି ଖେଳିବାକୁ ବେଶି ହଉଛି। ଖାଉଛି କମ୍। ଚଣ୍ଡୀ ଯେତେ ଦୁର୍ବଳ ହେଲେ ମଧ୍ୟ ଖାଉଛି। ସଜନାଛୁଇଁ ଭଳି ହାତଗୋଡ଼ ତା'ର।

ଚାରିଜଣ ଅଫିସର୍ ପରିବାର ଆସିଥାନ୍ତି। ପାଣି ପାଣି ସମସ୍ତେ ହୁଅନ୍ତି। ମିନିର ତମ୍ବୁଟା ସବା ଶେଷକୁ। ପାଣିଆଣିବାବାଲାକୁ ଆଗରୁ ତିନି ଘର ଧରିନିଅନ୍ତି। ମିନି ସବା ପଛରେ ପଡ଼େ। ପିଲାଙ୍କୁ ଖିର ପିଆଇ ଦେଇ ବସିଥାଏ। ଯେତିକିବେଳେ ପାଣି ଦେଲେ ରନ୍ଧା ହେବ। ଏଡ଼େ ଅଳସୁଆ ସେ ଲୋକଗୁଡ଼ାକ, ଜଣକପାଖରେ ପାଣି ଦେବେ ପୁଣି ବଗିଚାରେ ଗୋଡ଼ ହାତ ଲମ୍ବାଇ ବସିଯିବେ। ଦିନେ ଦିନେ ପାଣି ଭରା କରି ଦିଅନ୍ତି। ଦିନେ ଦିନେ ଏମାନେ ସବୁ ଚାଲିଯାନ୍ତି କାମକୁ। ମା'ମାନେ ସବୁ ଏକା ରହନ୍ତି। ଜଣେ ପଞ୍ଜାବୀ, ଦି ଜଣ ହିନ୍ଦୁସ୍ଥାନୀ, ମିନି ଓଡ଼ିଆ।

ସିଧା ସଳଖ ଚାରୋଟି ତମ୍ବୁ। ପ୍ରଥମଟିରେ ସିହ୍ନା ସାହେବ। ଦ୍ୱିତୀୟଟିରେ ରଘୁବୀର ସିଂ। ତୃତୀୟଟିରେ ଖରେ ସାହେବ। ଚତୁର୍ଥଟି ମିନିଙ୍କର। ରଘୁବୀରଙ୍କର ତିନୋଟି ପୁଅ। ଖରେଙ୍କର ତିନୋଟି ପୁଅ। ସିହ୍ନାଙ୍କର ଛୋଟ ଝିଅଟିଏ,

କୋଳରେ। ଏ ତମ୍ବୁଗୁଡ଼ିକ ବିପରୀତ ପାଖରେ ବ୍ୟାଚଲର ମାନେ। ଛୋଟ ଛୋଟ ତମ୍ବୁଗୁଡ଼ାଏ ସେମାନେ ରହିବା ପାଇଁ। ସମସ୍ତେ ଟ୍ରେନିଂ ପାଇଁ ଆସିଥାନ୍ତି।

ସକାଳୁ ଉଠି ଦେଖିଲେ ଫଳଫୁଲ ଭରା ବଗିଚାଟି କି ସୁନ୍ଦର ଦେଖାଯାଏ। ପିଲାମାନଙ୍କ ଭିତରେ ଭଲ ବନ୍ଧୁତା ଜମିଗଲା। ସବୁବେଳେ ଖେଳିବା। ସର୍ଦ୍ଦାର ପିଲାମାନେ ବେଶ୍ ଦୁଷ୍ଟାମି କରନ୍ତି। ଖରେ ପିଲା ଦୁଇଟି ମଧ୍ୟ। ସକାଳେ ଖରାବେଳେ ଖଟାକୋଳି ଗଛରୁ ଚଢ଼ି ଆଣି, ଘରକୁ ନିଅନ୍ତି। ମା'ମାନେ ଆଚାର କରି ଖରାରେ ଶୁଖାନ୍ତି। ଦିନେ ନଅଟାବେଳେ କିଏ କୋଳି ପାରୁଛି, କିଏ ଗୋଟାଉଛି, ପିଲାଙ୍କ ପାଟି ଶୁଭୁଛି। ଟିକୁନି ଦେଖିବାକୁ ଗଲା। ତା'ପଛରେ ତା'ସାନଭଉଣୀ ଚାଲିଲା। ମିନି ଟିକୁନିକୁ ନଦେଖି ତା'କୁ ଡ଼ାକିବାକୁ ଗଲା। ଆରେ, ଆ' ଟିକୁନି, ଆ'। ଟିକୁନି ବୁଲିକରି ଅନାଇଛି, ଦୁଷ୍ଟ ପିଲାଙ୍କ ପାଖକୁ ଯାଇନାହିଁ। ପୁଲିସ୍‌ଟିଏ ଆସିଗଲା। ମିନିକୁ କହିଲା, ଦେଖିଏ ବିବିଜୀ, ଆପ୍ ଚାର୍ ହଜାର ରୁପେୟା ଫେଙ୍କ ସକ୍‌ତେ ହେଁ! ଔର ଏ ଦୋଚାର ଫଲୋଁକେ ଲିୟେ ବଚ୍ଚୋଁକୋ ଭେଜ୍ ଦେତେ ହେଁ! ମିନି ଭଲକରି ହିନ୍ଦୀ କହି ପାରୁ ନଥାଏ। ସେ ପୂରା ବୋକୀ ହେଇଗଲା। ଛାନିଆଁ ହେଇଗଲା, ''ଆରେ! ଏ କି ଆଶ୍ଚର୍ଯ୍ୟ! ମୋ ପିଲା କୋଳି ପାଖକୁତ ଯାଇନାହାନ୍ତି, ଅନ୍ୟ ପିଲାଙ୍କ ପାଟିଶୁଣି ଯାଇଛନ୍ତି। ମୁଁବିତ କୋଳି କିମିତି ଜାଣିନାହିଁ, କି ପିଲା କୋଉଦିନ ଧରିବା କି ଖାଇବା ଦେଖିନାହିଁ!'' ମିନିର ଅନ୍ତରାତ୍ମା କାନ୍ଦି ଉଠିଲା। ପିଲାଙ୍କୁ ତମ୍ବୁ ଭିତରକୁ ଆଣିଲା। ପିଲାଙ୍କୁ ଗାଧେଇଦେଲା,



ଆଉ କେବେ ସିଆଡ଼େ ନଯିବାକୁ କହିଲା। ବଡ଼ କଷ୍ଟ ହେଲା ତାକୁ। ଭାବିଲା, କାହିଁ ଦେଶରୁ ଆସିଲି, ଏ ପୁଲିସ୍ କ'ଣ ନକହିଲା ! ପିଲାଦିନୁ ଏଯାଏଁ ଏମିତି କେବେ ମିନି ଶୁଣି ନଥିଲା।

ତମ୍ବୁଗୁଡ଼ିକ ଗୋଟିଏ ଗୋଟିଏ ବଖରା। ତମ୍ବୁ ପଛରେ ବାରଣ୍ଡାପରି। ସେଠି ଗୋଟିଏ ବଡ଼ କାଠର ପଟା ପଡ଼ିଥାଏ - ତା'ଉପରେ ଗାଧୁଆ ପାଧୁଆ କରିବାକୁ। ତା'କରକୁ ପାଣି ରଖିବାକୁ ଟବ୍‌ଟିଏ। ତା'ପାଖକୁ କମୋଡ଼୍‌ଟିଏ। ଘର ଭିତରେ ତମ୍ବୁରେ ଦୁଇଟି ଖଟ ଲାଗିକରି। ତଳେ ବଡ଼ ଦରି ବିଛା ହୋଇଥାଏ। ରାନ୍ଧିବାକୁ ଜନତା ଷ୍ଟୋଭ୍‌ଟିଏ। ଟ୍ରଙ୍କ୍ ବାକ୍ସ କେତୋଟି। ଅନ୍ୟମାନଙ୍କର ପିତଳ ଷ୍ଟୋଭ୍। ସାମନାରେ ସିମିତି ବାରଣ୍ଡା। ତମ୍ବୁ ବାହାରେ ଏପଟ ସେପଟ ଘାସ।

ଧୀରେଧୀରେ ଘରକାମ କରିବାକୁ ମିନିର ବେଳ ଚାଲିଯାଏ। ଆଉ କିଏ କାହା ଘରକୁ ଯାଉଛି ? ଜନତା ଷ୍ଟୋଭ୍‌ଟିରେ ରାନ୍ଧେ। ଖିର ସିଝା, ଭାତ, ଡ଼ାଲି, ରୁଟି, ମାଛ, ମାଂସ, ସବୁକୁ ସେଇ ଗୋଟିଏ ଷ୍ଟୋଭ୍। ବେଶି ସମୟ ଜଳୁଥାଏ। ତମ୍ବୁଭିତରେ ବହୁତ ଗରମ ହେଇଯାଏ। ଦିନରେ ଗରମ ବହୁତ। ସଞ୍ଜବେଳକୁ ଶୀତ ହୁଏ। ତେଣେ ଗାଁରେ ଦ୍ୱିତୀୟ ଦିଅରଙ୍କ ବାହାଘର ହବ। ସେ ଖବର ମିନି ଆଗରୁ ପାଇଥିଲା। ମିନି ତା'ପିଲାଙ୍କୁ ଧରି ଏଆଡ଼େ ଆସିଛି, ଦିଅରଙ୍କ ବାହାଘର ହେଇଗଲା। ବୋହୂଟି ଭଲ ବୋଲି ଶାଶୁ ଶ୍ୱଶୁର ଚିଠି ଦେଲେ। ଯା'ଚିଠି ଦେଲେ। ଟିକୁନି ପଚାରିଲା, ଏଁ, କାହାର ବାହାଘର ହେଲା ବୋଉ ? ମିନି କହିଲା, ତୋ ଦାଦାର ବାହାଘର ହେଲା। ଖୁଡ଼ୀ ଆସିଲେ। ଟିକୁନି କହିଲା, ହଁ, ସେ କ'ଣ ଖୁଡ଼ୀ ? ସେ ଦାଦାଙ୍କୁ ବହୁତ ଭଲପାଏ ଟିକୁନି।

ଦିନେଦିନେ ଏପରି ଝଡ଼ ହୁଏଯେ ପବନରେ ତମ୍ବୁଟି ଅଧା ପଡ଼ିଯାଇଥାଏ। ମିନିର ସ୍ୱାମୀ ଅନ୍ୟମାନଙ୍କ ସାଙ୍ଗରେ କାମରେ ଯାଇଥାନ୍ତି। ଟିକୁନି କହେ, ବୋଉ, ମୁଁ ଅଛି। ଆଉ ଡ଼ର ନାହିଁ। ଝଡ଼ ଗଲେ ଆମେ ତମ୍ବୁ ବାନ୍ଧିଦବା। ଯଥା ତଥା ତମ୍ବୁଟି ବାନ୍ଧିଦିଅନ୍ତି ମିନିର ସ୍ୱାମୀ ଫେରିବା ପର୍ଯ୍ୟନ୍ତ। ସଞ୍ଜ ଗଡ଼ିଯାଇଥାଏ। ଲଣ୍ଠନଟିଏ ଲଗାଇଦେଇ ଜନତା ଷ୍ଟୋଭ୍‌ଟି ଜଳାଇ ରନ୍ଧା କରନ୍ତି। ଚୁଣ୍ଡୀଟି ଶୋଇ ପଡ଼ିବ, ଟିକୁନି ଚାରିବର୍ଷ ଚାରିମାସର, ତଥାପି ଜଗି ରହିଥାଏ ବୋଉକୁ, ବାପା ଆସିବା ଯାଏ, ବଗିଚାରେ ଖେଳି ଖେଳି ହାଲିଆ ହେଇଥିଲେ ମଧ୍ୟ। ତମ୍ବୁଟି ଶେଷପାଖକୁ ଜଙ୍ଗଲ ଭଳି ଥାଏ। ରାତିକୁ କୁକୁର ତମ୍ବୁଭିତରେ ଦଉଡ଼ା ମାରେ। ତମ୍ବୁର କନା ମାଟିରେ ଲାଗିଥାଏ, ସେ ବାଟେ ପଶିଆସେ। ପିଲାଙ୍କର ଖାଇବା ଜିନିଷ ଗୋଟିଏ ଟ୍ରଙ୍କରେ ରଖାହୁଏ।

ଦିନକର ଡାଲହ୍ରଦ ବୁଲିବାକୁ ବାହାରିଲେ, ଚାରୋଟିଯାକ ପରିବାର । ଡାଲହ୍ରଦ ଯାଏ ଟାଙ୍ଗାରେ । ଡାଲହ୍ରଦ ଏପାରିରେ ନୌକା ସବୁ । ଏମାନେ ଚାରୋଟି ନୌକା ଠିକଣା କଲେ । ତିନୋଟି ନାଆରେ ଦୁଇଜଣ ଲେଖାଏଁ ନାଉରିଆ, ମିନିଙ୍କର ନାଆରେ ଜଣେ । ସେ ଜଣକ ଆଉଜଣଙ୍କ ପାଇଁ ବହୁ ଖୋଜିଲା । କିଏ ଆଉ ଦେଖାଗଲାନାହିଁ । ନାଉରିଆଟି କହିଲା ସେ ଏକା ନିଆ ଅଣା କରିପାରିବ । କୂଳରୁ କାତ ମାରି ନାଆ ବାହିଲା । ବେଶି ପାଣିରେ ଆହୁଲା । ମିନି ନାଉରିଆ ସାଙ୍ଗରେ କିଛିବାଟ କାତ ମାରିଲା, ଆହୁଲାବି ଧଇଲା । ଟିକୁନି ଅନାଇଁ ରହିଥାଏ । ତା'ମନ ଖରାପ ହେଇଯାଏ ଯେ, ତାଙ୍କ ନାଆରେ ଜଣେ ବୋଲି ନାଉରିଆ, ଆଉ ତା ମାମି ନାଆ ଚଳଉଛି । ମିନିର ସ୍ୱାମୀ ସାହସ ଦଉଥାନ୍ତି, ଟିକୁନିକୁ କହୁଥାଆନ୍ତି, ଦେଖୁଛୁନା, କେତେ ଡ଼ଙ୍ଗାରେ କାଶ୍ମୀରୀ ଝିଅମାନେ ଆହୁଲା ଧରିଛନ୍ତି, ତୋ ବୋଉତ ଦି'ମାସ ରହଣିରେ କାଶ୍ମୀରୀ ହେଇଗଲାଣି । ଏଣିକି କେବେ ଆଉ ଆସିଲେ ଖାଲି ଡ଼ଙ୍ଗା ନବା, ବୋଉ ଏକା ଡ଼ଙ୍ଗା ବାହିବ ।



ଏମିତି ହସଖୁସିରେ ନାଆ ସେପାରିରେ ଲାଗିଲା । ସମସ୍ତେ ଓହ୍ଲାଇଲେ । ସେପାରିରେ ବଡ଼ ସୁନ୍ଦର ବଗିଚାରେ ବୁଲିଲେ । କିଏ କେତେ କାଶ୍ମୀରୀ ଜିନିଷ କିଣିଲେ । ସଞ୍ଜରେ ପୁଣି ସେଇ ଡ଼ଙ୍ଗାରେ ପୁଣି ଡାଲହ୍ରଦ ପାରିହେଲେ । ଶ୍ରୀନଗର ବଗିଚାକୁ ଫେରିଲେ ।

ଦି'ମାସ ବିତିଗଲା। ମିନି, ତା'ସ୍ୱାମୀ, ପୁଅ, ଝିଅ ଦିଲ୍ଲୀ ଆସିବାକୁ ବାହାରିଲେ। ମିନି ତମ୍ବୁରେ ରାତିରେ ଜିନିଷପତ୍ର ସବୁ ସଜାଡ଼ିଲା। ସବୁ ରଖିସାରି ଚାବି ଖୋଜିଲା, ଚାବି ପାଉନାହିଁ। ଖୋଜିବାକୁ ଲାଗିଲା ଲଣ୍ଠନ ଧରି। ମିନିସ୍ୱାମୀବି। ରାତି ଆସି ଏଗାରଟା ହେଲାଣି। ସକାଳୁ ଉଠି ଯିବାକୁ ପଡ଼ିବ। ତମ୍ବୁ ଆଗରେ ଗୋଟିଏ ଛୋଟିଆ ଗାତ। ତା'ଭିତରେ ହାତ ପୂରାଇ ଦେଖିଲେ, ଚାବି ପଡ଼ିଛି। ଚଣ୍ଡୀତ ଚାବି ଧରି ବୁଲୁଥିଲା, ଚାବି ଗାତରେ ପୂରାଇ ଦେଇଛି। ଚାବି ନେଇ ବାକ୍ସଗୁଡ଼ିକ ଚାବି ପକାଇ ଠିକ୍‌ଠାକ୍ ରଖିଲେ। ରାତିକି ତମ୍ବୁରେ ଶୋଇ ସକାଳୁ ଉଠି ନିତ୍ୟକର୍ମ ସାରି କାଶ୍ମୀର, ଫୁଲଫଳ, ବଗିଚା, ତମ୍ବୁ ସବୁ ପଛକୁ ପକାଇ ଚାଲିଲେ। କୁଲି ଜିନିଷପତ୍ର ମୁଣ୍ଡାଇ ଚାଲିଲା। ବସ୍ ଧରିଲେ। ଦିଲ୍ଲୀ ଆସିଲାବେଳେ ବସ୍ ପାହାଡ଼ ଦେଇ ଘୂରି ଘୂରି ଜାମୁ। ଜାମୁରେ ରାତିକ ରହିଲେ। ପିଲାମାନେ କ'ଣ ଜଳଖିଆ ଖାଇ ଶୋଇପଡ଼ିଲେ। ପରଦିନ ପଠାଣକୋଟ। ରାସ୍ତାଯାକ କୋଉଠି କେତେ ଖାଲଢ଼ିପ, ପାହାଡ଼, ନଈ, ନାଳ ପଡୁଥିଲା। ପଠାଣକୋଟରେ ଗୋଟେ ନିରାମିଷ ହେଟେଲ୍‌ରେ ଖାଇ, ରାତିଟା ଡ଼ାକବଙ୍ଗଳାରେ କଟାଇ ଟ୍ରେନ୍ ଧରିଲେ।

— ୧୮ —

ଦିଲ୍ଲୀ ଅଭିମୁଖେ ଗାଡ଼ି ଚାଲିଲା। ମିନି ଭାବୁଥିଲା ଦିଲ୍ଲୀରେ କୋଉଠି ଭଲ ଘରଟିଏ ମିଳନ୍ତା ନାହିଁ! କାଶ୍ମୀର ଯିବା ପୂର୍ବରୁ ଯେଉଁ ଘରେ ଥିଲେ କି ଅବସ୍ଥା ସେ ଘର! ପାଣି ନଥାଏ। ଟିଉବ୍‌ୱେଲ୍ ମାରିମାରି ପାଣି କାଢ଼ିଲେ, ଖାଲି ମାଟିପାଣି। ବାଲ୍ଟିରେ ମାଟି ବସିଗଲେ ଯାଇଁ କାମଦାମ କରିହୁଏ। ଘରବାଲାର ଗାଈ, ମଇଁଷି ଚାରିଆଡ଼େ। ପାଇଖାନାଟିଏ, ଛି! ମନେ ପଡ଼ିଲେ ଦିହ ଶୀତେଇ ଉଠେ। ଯାହା ଯିମିତି ମିଳିବ। ଦିଲ୍ଲୀ ପହଞ୍ଚିଲେ। ଜାଣିଲେ କିଏଜଣେ ଟଣ୍ଡନ ସାହେବ ଭଲ ଘରଟିଏ ସତୁରି ଟଙ୍କାକୁ ଭଡ଼ା ନେଇଛନ୍ତି। ସେଇ ଘରକୁ ଗଲେ ଟାକ୍ସିରେ। ସେଇ ଘରେ ପହଞ୍ଚି ବହୁତ ଖୁସି ହେଇଗଲେ ମିନି, ତା'ବର, ପିଲାମାନେ। ଘରବାଲୀ ଚା ଜଳଖିଆର ବ୍ୟବସ୍ଥା କରିଥିଲେ। ଦିନରେ ଖାଇବା ବ୍ୟବସ୍ଥା ମଧ୍ୟ କଲେ। ଘରବାଲୀର ଦି'ପୁଅ। ମିନି ପୁଅଠୁଁ ଗୋଟିଏ ବଡ଼, ଝିଅଠୁଁ ଗୋଟିଏ ବଡ଼। ଭଲ ଦୋସ୍ତି ମିଳିଗଲା ପିଲାଙ୍କୁ। ଘରବାଲୀର ଜଳଖିଆ ଆଉ ରୋଷେଇ-ସକାଳଓଳି। ମିନିକୁ ଆଉକିଛି କରିବାକୁ ପଡ଼ିଲା ନାହିଁ। ଏତେବାଟ ଆସିଥିବାରୁ ଖିଆପିଆ କରି ପିଲାଙ୍କୁ ଧରି ମିନି ଶୋଇଗଲା। ଉଠିଲା ବେଳକୁ ଚାରିଟା ବାଜିବ। କ'ଣ କିମିତି ରାତିପାଇଁ କରିବ ଭାବୁଛି, ଜିନିଷପତ୍ର କୋଉଠି କ'ଣ ଅଛି ଦେଖୁଛି, ଘରବାଲୀ କହିଲେ, ଭଉଣୀ, ତମେ ଆଉ ଏ ଓଳି ରନ୍ଧାରନ୍ଧି କରନାହିଁ; ମୁଁ କରିଦେଉଛି।

ତମେ ବିଶ୍ରାମ କର। ମିନି ତୁନି ରହିଲା। ରାତି ଓଳି ମଧ୍ୟ ଖିଆପିଆ ହେଲା ପଞ୍ଜାବୀ ଘରବାଲୀ ଘରେ।

ତା'ପରଦିନ ମିନି ରୋଷେଇବାସ କଲା। ପଞ୍ଜାବୀ ସ୍ତ୍ରୀଲୋକ ବଡ଼ ଚତୁରୀ। ମିନିକୁ ଦେଖିଲା, ବଡ଼ ଉଦାସୀ। ସବୁଦିନେ ଚାରିଟାବେଳକୁ ସ୍ତ୍ରୀଲୋକଟି ବୁଲି ବାହାରେ ସାଙ୍ଗ ସାଥୀ ଘରମାନଙ୍କୁ। ମିନିକୁ କହେ, କୁକୁ ଡ୍ରାଡ଼ି ଆସିଲେ ଚା' କରି କୁକୁ ହାତରେ ପଠାଇଦେବୁ, କୁକୁକୁ ବୁବୁକୁ ଦୁଧ ଗରମକରି ପିଇବାକୁ ଦେଇଦବୁ ଭଉଣୀ। ମିନି ହଁ କରେ। ଘରବାଲୀ ତା'ଛୁଆଙ୍କୁ ମିନି ଜିମା କରିଦିଏ। ତା'ରୋଷେଇଘରେ ଚାବିଦିଏ ନାହିଁ। ଏମିତି ଚାଲିଲା ସବୁଦିନ। ମିନି ସେ କହିବା ମୁତାବକ ତା'କାମ କରିଦିଏ।

ଦିନକର ମିନିସ୍ୱାମୀ ଗାଧୋଉଛନ୍ତି, ଜଣେ ମିସ୍ତ୍ରୀ କାମ କରୁଥାଏ ଘରବାଲୀର। ମିନି ରୋଷେଇ କରୁଛି, ମିସ୍ତ୍ରୀଟି ପଚାରିଲା, ଆଦମୀ କିତନା ଉମର ଲଗତେ ହେଁ? ମିନି କହିଲା, ଉନ୍‌ତିଶ ହୋଗା। ମିସ୍ତ୍ରୀ କହିଲା, ଇତନା ଉମର ନେହିଁ ଲଗତେ। ଘରବାଲୀ ପଚାରିଲା, କିତନା ଲଗତା ହେ। ମିସ୍ତ୍ରୀ କହିଲା, ପଚିଶ ସାଲ ଲଗତେ ହେଁ। ଘରବାଲୀ କହିଲା, ହମାରେ ବାବୁଜୀ କିତନା ସାଲ ଲଗତେ ହେଁ? ମିସ୍ତ୍ରୀ କହିଲା, ଓ ତୋ ପଚାଶ ସାଲ ଉପର ଲଗତେହେଁ। ଘରବାଲୀ ରାଗିଗଲା। କହିଲା, ବାଲ୍ ଉଡ଼୍‌ଗିଆ, ଐସେ ତୁମ୍‌କୋ ପଚାଶ ସାଲ ଲଗତେ ହେଁ, ଓତୋ ପଇଁତାଲିଶ ସାଲକୀ ହୁଆ। ମିନିକୁ ବହୁତ ହସ ମାଡ଼ିଲା। ଘର ଭିତରକୁ ଆସି ବହେ ହସିଲା। ମିସ୍ତ୍ରୀ କ'ଣ ରହସ୍ୟ କରୁଥିଲା?

ମିନିସ୍ୱାମୀ ଆସିବାକୁ ରାତିରେ ଡେ଼ରି ହୁଏ। ମଝିରେ ମଝିରେ ଦିନରେ ଥରେ ଦି'ଥର କିଏ ନା କିଏ ଆସନ୍ତି, ଫୁଲ ତୋଡ଼ାଟେ ଧରି, ଘର ସଜେଇବା ପାଇଁ। ଝିଅକୁ ମୁନି, ପୁଅକୁ ବାବୁଲ କହନ୍ତି। ମୁନି ବାବୁଲ୍‌କୁ କହନ୍ତି, ବିବିଜୀ ହମାରେ ବୋଲି ଆଚ୍ଛାସେ ସମଝତି ନେହିଁ, ଔର ବଡ଼ୀ ସିଧୀ ହେଁ। ମିନିକୁ ବଡ଼ ବିରକ୍ତ ଲାଗେ, ଏଗୁଡ଼ାକ କାହିଁକି ଦିନକୁ ଥରେ ଦି'ଥର ସକାଳେ ଖରାବେଳେ ଆସୁଛନ୍ତି? ସାମନାସାମନି ହବାକୁ ମିନିକୁ ବଡ଼ ଲଜ୍ଜା ଲାଗେ। ଘରବାଲୀ ଦିନେ ଦିନେ କହେ, ବବୁଲ୍ ତେରୀ ମାମିତ ସୁସ୍ଥ ହୋ ଗୟୀ, ଖାନା ଅଭିତକ ବନାୟା ନେହିଁ। ଆଚ୍ଛା ବେଟା, ତୁ ମେରୀ ପାଶ ଆଇ ଖାନା ଖା'ଲେ। ଟିକୁନି ଘରବାଲୀ ପିଲାଙ୍କ ସହିତ ତା'ଘରେ ବସିଯାଏ, ଘରବାଲୀ ଟିକୁନିକୁ ଖାଇବାକୁ ଦିଏ।

ବଲ୍‌ବୀର ବୋଲି ପିଅନଟିଏ ଆସେ। କୋଇଲା ଚୁଲି ଧରାଇ ଦିଏ। ବଜାର ସଉଦା କରିଦିଏ। ଗହମ ପେଷାଇ ଆଣେ। ଘରବାଲୀ ମଧ୍ୟ କେତେ

କାମ କରାଏ ବଳବୀର ହାତରେ। ଏମିତି କେତେଦିନ ଚାଲିଲା। ମିନି ନିୟମିତ ରନ୍ଧାବଢ଼ା କରେ। ମାଛ ମାଂସ ରାନ୍ଧେ। ଘରବାଲୀ ମାଛ ମାଂସ ରାନ୍ଧେ ନାହିଁ। ଘରବାଲୀ ବେଦପ୍ରକାଶଜୀ ମାଛ ମାଂସ ଖାଏ। ମିନି ରାନ୍ଧିଥିଲେ ସେ ତାଙ୍କୁ ଦିଏ। ଘରବାଲୀ ସୋରିଷ ଶାଗ, ମକ୍କା ରୁଟି ତିଆରି କରେ। ମିନିକୁ ସୋରିଷ ଶାଗ ଦିଏ। କେବେ କେବେ ବେଦପ୍ରକାଶଜୀ ମାଛ ଆଣେ। ଶୁକ୍ରବାର, ବୁଧବାର ମାନଙ୍କରେ। ଘରବାଲୀ ମିନିକୁ ପଚାରେ, ବହନଜୀ, କୁକୁଡ଼ା ଡ଼ାଡ଼ି ମଛଲି ଲାୟେ। ଆପ ବନାଦେଁଗେ। ମୈନେ ମସାଲା ପିଷ୍‌କେ ଦୁଁଗୀ। ମିନି ହଁ କରେ। କଟା ମାଛ ବଡ଼ ପାଞ୍ଚ'ଛ ଖଣ୍ଡ ହବ ମିନି ଧୋଇ ସଫା କରିଦିଏ। ଭାଜିକରି ରାନ୍ଧିଦିଏ। ଘରବାଲୀକୁ ଦେଇଦିଏ। ବେଦପ୍ରକାଶ, ତା'ପୁଅମାନେ ଖାଆନ୍ତି। ମାଂସ ମଧ୍ୟ ଆଣିଦିଏ। ମିନି ରାନ୍ଧିକରି ଦେଇଦିଏ, ବେଦପ୍ରକାଶ ଖୁସିରେ ଖାଏ।

ମିନି ପରିବାର ରହିବା ପୂର୍ବରୁ ସେ ଘରେ ଜଣେ ବଙ୍ଗାଳୀ ପରିବାର ରହୁଥିଲେ। ସେ ମିନିକୁ ଦେଖିଲେ, କହିଲେ, ଭଉଣୀ, ଏ ପଞ୍ଜାବୀ ସ୍ତ୍ରୀ ଲୋକ ପାଖରେ କିମିତି ଆପଣ ଚଳୁଛନ୍ତି? ମୁଁ ତ ଛ'ମାସ ରହିପାରିଲି ନାହିଁ। ସେ ସବୁବେଳେ ବୁଲିଯିବ, ମତେ କହିବ ଘର ଜଗେ। ମୁଁ କହିବି, ତୁ ବୁଲିଯିବୁ, ମୁଁ କାହିଁକି ତୋ ଘରେ ଜଗିବସିବି? ମୁଁ ମୋ ସାଙ୍ଗସାଥୀଙ୍କ ପାଖକୁ ଯିବି। ଆପଣ ଘରେ ରହୁଛନ୍ତି ନା? ମିନି କହିଲା, ହଁ ମୁଁ ରହୁଛି।

ମିନି ଦିନେ ଦେଖିଲା ବାହାରେ ଜଣେ ଭଦ୍ର ମହିଳା ଆସୁଛନ୍ତି। ମିନି ପାଖକୁ ଗଲା। ସେ ମିନିକୁ ପଚାରିଲେ, ପୁଅ କୋଉଠି ପଢୁଛି? ସେ କହିଲେ, ମୁଁ ନୂଆକରି ନର୍ସରୀ ସ୍କୁଲ୍ ଖୋଲୁଛି। ପୁଅକୁ ପଠାଇବେ। ଏହି ପାଖରେ ସ୍କୁଲ୍। ନିଜେ ଆପଣ ପୁଅପାଇଁ ଜଳଖିଆ ନେଇକରି ଯିବେ, ପୁଅକୁ ଦେଖି ଆସିବେ। ମିନି ହଁ କଲା। ମାସକୁ କେତେ ଦରମା ପଚାରିଲା। ସେ କହିଲେ, ମାସକୁ ଆଠଟଙ୍କା। କୋଉଦିନ ସ୍କୁଲ୍ ଯିବ, ସେଦିନ କହିଲେ। ମିନି ପୁଅକୁ ଭଲ ଦିନ ଦେଖି ସ୍କୁଲ୍‌କୁ ପଠାଇଲା। ଟିକୁନି ସ୍କୁଲ୍‌କୁ ଯାଇ ବହୁତ ଖୁସି ହେଲା। ସ୍କୁଲ୍‌ରେ ବିଭିନ୍ନ ପ୍ରକାର ଖେଳ। କେତେ ପିଲା ତା'ପଛକୁ ସ୍କୁଲ ଗଲେ। ମିନି, ପାଖରେ ମଇଁଷି ଖିର ଆଣିବାକୁ ଯାଏ। ଘରେ କାମଦାମ ବହୁତ। ତେଣୁ ଟିକୁନି ପାଖକୁ ବଳବୀରକୁ ପଠାଇଦିଏ। ଦିନେ ମିନି ଗଲା। ପିଲାମାନଙ୍କୁ ଦେଖିଲା, ପୁଅ କିମିତି ପାଠ ପଢୁଛି, ଖେଳୁଛି। ମିନିକୁ ବହୁତ ଭଲ ଲାଗିଲା।

କିଛି ଦିନ ପରେ ମିନିର ଆଉ ଗୋଟିଏ ପୁଅ ହେଲା। ଡିସେମ୍ବର ମାସ। ବହୁତ ଶୀତ ପଡ଼ିଥାଏ ଦିଲ୍ଲୀରେ। ପଞ୍ଜାବୀ ଜଣକ କହିଲେ, ମୋ

ଘର ପବିତ୍ର ହେଇଗଲା। ପୁଅ ହେବା ପରେ କାମଦାମ କରିବାକୁ ଜଣେ ସ୍ତ୍ରୀଲୋକ ଆସିଲା। ମିନିର ଦେହରେ ଗରମ ତେଲ ମାଲିସ୍ କରେ। ଖିରରେ ମୂଳାଠି-ଶୁଖିଲା ବଡ଼ ଖଜୁରୀ ପରି ଫଳ ପକାଇ ଭଲକରି ସିଝାଇ ପିଇବାକୁ ଦିଏ। ରୋଷେଇ କରେ। ପରଟା ତିଆରି କରେ। ଆଳୁମଟର ମସଲାବାଟି ରାନ୍ଧେ। ଘରର ସବୁକାମ କରେ। ବାସଙ୍ଗପତ୍ର ପକାଇ ପାଣି ସିଝାଇ ମିନିକୁ ଗାଧୋଇ ଦିଏ। ଶୀତ ଟିକେ କମି ଆସିଲା। ଚମେଲୀ ପନ୍ଦର ଦିନ ରହିଲା। ଚମେଲୀ ଗଲାପରେ ଏମିତି କାଳିଆ ମେଘ ହେଲାଯେ, ବାହାରକୁ ବାହାରି ହେଲାନି।

— ୧୯ —

ପୁଅକୁ ପାଞ୍ଚମାସ ହେଇଛି, ମିନିସ୍ୱାମୀଙ୍କ ଅଫିସ୍ ଦିଲ୍ଲୀରୁ ଦେରାଦୁନ ଘୁଞ୍ଚିଗଲା। ଅଫିସ୍‌ଲୋକ ସବୁ ଦେରାଦୁନ ଗଲେ। ମିନିଘର ବେଦପ୍ରକାଶ ଘର ଛାଡ଼ିବା ଜାଣି ନର୍ସରୀ ସ୍କୁଲର ମାଷ୍ଟ୍ରାଣୀ ଆସି କହିଲେ, ଭଉଣୀ! ପୁଅକୁ ମୁଁ ପ୍ରଥମେ ମାଗି ଆସିଥିଲି, ତାକୁ ମୋତେ ଦେଇଯାଅ, ମୋ ପାଖରେ ପଢ଼ିବ। ମିନି କହିଲା, ନାଇଁ ସେ ଦେରାଦୁନ୍‌ରେ ପଢ଼ିବ। ଆମେ ପୁଅକୁ ଏତେ ଦୂରରେ ଛାଡ଼ିଦେଇ ଯିବୁ କେମିତି? ସେ ମାଷ୍ଟ୍ରାଣୀ ବହୁତ ମନ ଦୁଃଖ କରି ଗଲେ।

ଦିଲ୍ଲୀ ଛାଡ଼ିବା ପୂର୍ବରୁ ବନବାସୀ ମହାନ୍ତି ଖିଆପିଆ କରିବାକୁ ତାଙ୍କ ଘରକୁ ଡ଼ାକିଥାନ୍ତି। ତା'ପୂର୍ବରୁ ତାଙ୍କୁ ହାଡ଼ଫୁଟି ହେଉଥାଏ। ସେ ମିନି ଘରକୁ ବାରମ୍ବାର ଆସୁଥାନ୍ତି। ମିନିସ୍ୱାମୀ ଯେତେ ମନା କରନ୍ତି, ସେ କହନ୍ତି ଭଲ ହେଇଗଲାଣି ତ! ଘା ଶୁଖିଲା ବେଳେ ତ ଡ଼ିଏଁ। ମିନି ପୁଅ, ଝିଅ, ସାନପୁଅକୁ ହାଡ଼ଫୁଟି ହେଇଗଲା। ବଡ଼ ବ୍ୟସ୍ତ ହୋଇପଡ଼ିଲା ମିନି। ପ୍ରଥମେ ପିଲାଙ୍କୁ ଖୁବ୍ ଜ୍ୱର, ତା'ପରେ ହାଡ଼ଫୁଟି ବାହାରିଲା। ପିଲାମାନେ କିଛି ଖିଆପିଆ କରିପାରୁ ନଥାନ୍ତି। ପିଲାମାନେ ଟିକେ ସୁସ୍ଥ ହେବାରୁ ବେଦପ୍ରକାଶ ଘର ଛାଡ଼ିଲେ। ରେଳଗାଡ଼ିରେ ରାତି ଆଠଟାରେ ପିଲାମାନଙ୍କୁ ନେଇ ବସିଲେ। ସକାଳ ସାତଟାରେ ଦେରାଦୁନ୍‌ରେ ପହଞ୍ଚିଲେ। ଷ୍ଟେସନ୍‌କୁ କାଲୁରାମ, ପିଅନ ମାମଚାନ୍ଦ ଆସିଥାନ୍ତି। ଜିପ୍‌ରେ ପିଲାମାନଙ୍କୁ ଧରି ବସିଲେ।

ଅଫିସ୍ ଘର ଉପରମହଲାରେ ଗୋଟିଏ ବଖରା ଘର। ସେଠି ପିଲାମାନଙ୍କ ପାଇଁ ଖଟ ପଡ଼ିଲା। ଦିଲ୍ଲୀରୁ ବଲବୀର ସିଂ ଯାଇଥାଏ ସାଙ୍ଗରେ। ଅଫିସ୍ ଅର୍ଡ଼ରଲି ପିଅନଟି ଥାଏ। ତଳମହଲାରେ ଭାଗଚାନ୍ଦ ରୋଷେଇ କରେ, ମିନି ପରିବାରର, ତା'ନିଜର, ବଲବୀରର। ପିଲାମାନଙ୍କୁ ତଳକୁ ନେଇ ଖୁଆଇ ଛାଡ଼ିଦିଏ ଭାଗଚାନ୍ଦ। ଅଫିସ୍ ଜଗୁଆଳି ଥାଏ ଗଡ଼ବାଲି ପିଅନଟିଏ। ସେ

ରାତି ଜଗୁଥାଏ, ଦିନଯାକ ଶୋଇ ରହେ, ସଞ୍ଜ ଆଗରୁ ଉଠେ। ପିଲାଙ୍କ ସହିତ ବେଶ୍ ଖେଳେ।

ଟିକୁନି ପାଠ ପଢ଼ିବ। ସେଣ୍ଟ ଥୋମାସ୍ ହାଇସ୍କୁଲ୍‌ରେ ପଢ଼ିବାପାଇଁ ତା'ନାମ ଲେଖାଇଲା। ତା'ର ସ୍କୁଲଡ୍ରେସ-ଧଳା ସାର୍ଟ, ନୀଳ ପ୍ୟାଣ୍ଟ ତିଆରି ହେଲା। ଅଫିସର ଜଣେ କିରାଣି, ବିହାରୀ ଭଦ୍ରଲୋକ ପନ୍ଦର ଦିନ ଟିକୁନିକୁ ସାଇକଲ୍‌ରେ ନବା ଆଣିବା କଲେ। ସକାଳୁ ଛ'ଟାରୁ ଯାଏ, ଦିନ ବାରଟାକୁ ଘରକୁ ଆସେ। ଅମି ତା'ଭାଇପାଇଁ ଅପେକ୍ଷା କରି ରହେ, ଭାଇ ଗଲାବେଳକୁ ତ ସେ ନିଦରୁ ଉଠି ନଥାଏ। ଉଠିଲେ ଆଗ ସାନ ଭାଇ ସହିତ ଖେଳେ।

ଟିକୁନି ସ୍କୁଲ୍‌ରୁ ଫେରିଲେ ବାପା ଅଫିସ୍‌ରୁ ଫେରିଲାପରେ ସମସ୍ତେ ମିଶି ଖାଆନ୍ତି। ବାପା ଟୁର୍‌ରେ ଯାଇଥିଲେ, ଭାଇଭଉଣୀ ଦିହେଁ ଖାଆନ୍ତି, ଆଉ ତାଙ୍କର ଶୋଇବା ନଥାଏ। ଦିନଯାକ ଖେଳ। ଅଫିସ୍ ଜଗୁଥାଇ ପିଅନଟିକୁ ଦିନେ ଦିନେ ଶୁଆଇ ଦିଅନ୍ତି ନାହିଁ। ଭାଇଭଉଣୀ ଦିହେଁ ହିନ୍ଦୀରେ କଥାବାର୍ତ୍ତା ହୁଅନ୍ତି। ପିଅନଗୁଡ଼ିକ ବହୁତ ବିଶ୍ୱାସୀ। ପିଲାମାନଙ୍କୁ ନଜରରେ ରଖିଥାନ୍ତି। ମିନିସ୍ୱାମୀଙ୍କର ଉପର ହାକିମ ସେତେବେଳକୁ ଆସି ନଥାନ୍ତି। ଦୁଇଜଣଙ୍କର ଅଫିସ୍‌କାମ ମିନିସ୍ୱାମୀ ତୁଲାଉଥାନ୍ତି। ରାତି ନଅଟାଯାଏ ଅଫିସ୍‌ରେ ବସିଥାନ୍ତି। ମିନି ତା'ସାନପୁଅକୁ କାଖେଇ ଅଫିସ୍‌କୁ ଯାଏ। ଦିନେ ରାତି ନଅଟା ହେଲାଣି, କିରାଣି, ବଡ଼ବାବୁ ସବୁ ଯେ ଯୁଆଡ଼େ ଗଲେଣି, ଦରବୁଢ଼ା ପିଅନଟି ଢୁଳେଇ ବସିଛି। ମିନି ଯାଇ ଦେଖିଲା ତା'ସ୍ୱାମୀ କାମରେ ମନଧ୍ୟାନ





ଦେଇ ବସିଛନ୍ତି। ପିଅନଟି କହିଲା, ବିବିଜୀ ଆଇହେଁ! ମୈନେ ତୋ ଅଭିତକ୍ ଖାନା ନହିଁ ବନାୟା। ବଚ୍ଚେ ଶୋଗୟେ କ୍ୟା? ଛୋଟାମୁନ୍ନା ଶୋୟାନହିଁ କ୍ୟା? ବିବିଜୀ ହିଙ୍ଗ୍ ହେ କ୍ୟା? ହମାରେ ପେଟ୍‌ମେ ଦରଦ୍ ହୁଆ, ଗରମପାନି କରକେ ପି ଲୁଁଗା। ମିନି କହିଲା, ଚଲୋ, ହିଙ୍ଗ୍ ଦେଁଗେ। ପିଅନଟି କହିଲା, ଅରେ କ୍ୟା କରୁଁ ବିବିଜୀ, କୋଇ ନେହିଁ, ସାହେବ୍ କାମ୍ କର ରହେ ହେଁ, କୈସେ ଯାଉଁ!

ପାଖରେ ଗୋଟେ ପଞ୍ଜାବୀ ଘର ଥିଲା। ତା'ଘରୁ ସକାଳୁ ଯାଇ ଭାଗଚାନ୍ଦ କ୍ଷୀର ନେଇ ଆସେ। ତାକୁ ଷ୍ଟୋଭ ଜଳାଇ ବସାଏ। ପିଲାମାନଙ୍କୁ ପିଆଏ। ସବୁଦିନେ ସକାଳେ ପଞ୍ଜାବୀ ବୁଢ଼ାଟିଏ ବ୍ରାଉନ୍ ରୁଟି ଅଣ୍ଡା ଆଣେ, ମିନି ତା'ଠାରୁ ରଖେ। ଚାରିମାସ ଉପର ମହଲାରେ ରହିଲେ। ପରେ ଆଉଗୋଟେ ଏକମହଲା ପାଖ ଘରକୁ ଗଲେ, ସେଠି ବାହାର କରେ ଅଫିସ୍, ଏପାଖ ତଳକର ଘରେ ମିନି, ତା'ପରିବାର ରହନ୍ତି। ପୁଣି ତଳପଟକୁ ଗୁଡ଼ାଏ ଛୋଟ ଘର ଥାଏ। ଗୋଟିଏ ଛୋଟ ଘରେ ଭାଗଚାନ୍ଦ ବୁଢ଼ା ରହେ। ପାଖ ଗ୍ୟାରେଜ୍‌ଟିରେ ଡ୍ରାଇଭର ଓ ତା'ପିଲାପରିବାର ରହନ୍ତି। ପାଖ ପଞ୍ଜାବୀ ଘର ବଡ଼ ଝିଅଟି ଦିନେ ଦିନେ ଦହି-କଢ଼ି ଧରି ଆସେ।

ମିନି ଘର ସେହି ଅଗଣାରେ ଗୋଟାଏ ଆମ୍ବଗଛ ଥାଏ। ତିନି ବର୍ଷ ରହଣି ମଧ୍ୟରେ ଗୋଟିଏ ବି ଆମ୍ବ ଫଳି ନଥାଏ। ବର୍ଷାଦିନେ ବହୁତ ବର୍ଷା। ଶୀତଦିନେ ହିମାଳୟରେ ବରଫ ପଡ଼ିବା ଦିଶୁଥାଏ। ଏତେ ଶୀତ ଯେ ଦେହରେ ବରଫ ଘଷି ଦେଲାପରି ଲାଗେ। ପିଲାମାନଙ୍କ ପାଇଁ ଦରି ପକା ହେଉଥାଏ ତଳେ। ସାନପୁଅଟି ଥଣ୍ଡାକୁ ଯାହା ଖାଇଲେ ବାନ୍ତି କରି ପକାଏ। ପିଲାମାନଙ୍କୁ ମଧ ଖୁବ୍ ଜ୍ୱର ହୁଏ। ଟିକୁନି ଏଥର ଘୋଡ଼ା ଗାଡ଼ିରେ ଯିବା ଆସିବା କରୁଥାଏ। ସାଙ୍ଗ ପୁଅଝିଅ ସବୁ ଡାକି ଆସନ୍ତି ଘରକୁ। ସେତ ସକାଳ ପାଞ୍ଚଟାରୁ ଉଠି ଆପେ ତିଆରି ହେଇଯାଏ। ଦିନେ ଦିନେ ଭାଗଚାନ୍ଦ ଗରମ ପାଣି କରି ଗାଧେଇ ଦିଏ। ଭାଗଚାନ୍ଦ ଟୁର୍‌ରେ ଗଲେ ମାମଚାନ୍ଦ କ୍ଷୀର ଆଣିଦିଏ। ମିନି ଟିକୁନିକୁ ଗାଧେଇ ଦିଏ।

ମିନିସ୍ୱାମୀର ଉପର ହାକିମ ଆସିଗଲେ। ପଡ଼ିଶା ଘରେ ରହିଲେ। ସେ ଯୋଉଦିନ ଆସିଲେ, ତାଙ୍କପାଇଁ ସବୁ ରୋଷେଇବାସ ମିନି ତା ନିଜ ଘରେ କରିଦେଲା। ଭାଗଚାନ୍ଦ ସବୁପ୍ରକାର ଖାଦ୍ୟ ସେଠାକୁ ନେଇଗଲା। ତାକୁ ମିନିବର କହିଲେ, ତୁ ଆଜିଠାରୁ ଯାଇ ତାଙ୍କ ପାଖରେ ରହିବୁ, ତାଙ୍କ ପାଇଁ ରୋଷେଇ କରିବୁ। ସେ ସେଦିନ ଗଲା। ଭାଗଚାନ୍ଦ ଆସି ଓପରଓଳି ମିନିକୁ କହିଲା, ମୁଁ ବ୍ରାହ୍ମଣ। ସେମାନେ ସବୁ ଖାଇବା ଜିନିଷ ଅଇଁଠା କରୁଛନ୍ତି, ମୁଁ ତାକୁ ପଛରେ ଖାଇବି! ସେ ସେଦିନ କିଛି ଖାଇ

ନଥାଏ। ତାଙ୍କ ପାଇଁ କେତେ ଦିନ ରୋଷେଇ କରିଦେଲା, ଆଉ ତା'ପାଇଁ ତା'ଘରେ ନିଜେ ରୋଷେଇ କଲା। ତାଙ୍କ ପାଇଁ ଆଉ ଗୋଟେ ଭଲ ପିଲା ଯୋଗାଡ଼ କରିଦେଲା। ମିନିକୁ କହିଲା, ମୁଁ ଆପଣଙ୍କର ଏଇଠି ପଡ଼ିରହିବି, ଆପଣଙ୍କର ପିଲାମାନଙ୍କର ସେବା କରିବି। ଯେବେ ସେ ଘରେ ରହେ, ରନ୍ଧାବଢ଼ା, ଲୁଗାସଫା, ଜୋତା ପାଲିସ୍, ଘର ଓଳା, ବିଛଣା କରିବା ସବୁ କରେ। ମିନି ତା'ପାଇଁ ଖାଇବା ଜିନିଷ ରଖିଦେଇ, ନିଜ ପରିବାର ପାଇଁ ନେଇଆସେ। ବୁଢ଼ା ତା'ର ଯାହା ଖାଇବ ଖାଇବ, ବାକି, ରହିବ। ହାଡ଼ି, ହାଡ଼ିଆଣୀ ଦି'ଜଣ ଥାଆନ୍ତି। କମୋଡ୍ ପାଇଖାନା ସଫା କରନ୍ତି। ମିନି ସାନପୁଅର ଘୁଅମୂତ ଲୁଗାପଟା ହାଡ଼ିସବୁ ସଫା କରିଦିଏ। ମିନି ତାକୁ ଭଲକରି ଖାଇବାକୁ ଦିଏ। ଆମ୍ବଗଛଟି ଖରାଦିନେ ଛାଇଦିଏ। ତା'ପାଖରେ ପିଲାମାନେ ଖେଳନ୍ତି, କୁଆଡୁ ଛୋଟ କଇଁଛଟିଏ ଆସେ, ପିଲା ତାକୁ ଗୋଡ଼େଇ ଖେଳନ୍ତି, ସଞ୍ଜବେଳେ କୁଆଡ଼େ ପୁଣି ଚାଲିଯାଏ। ସକାଳୁ ପିଲାମାନେ ଉଠିଲା ପରେ କଇଁଛଟି ଆସେ। ସେଘରେ ମିନିହେରିକା ଯେତେଦିନ ଥିଲେ, ସେ କଇଁଛ ଆସି ଖେଳୁଥାଏ।

ମିନିସ୍ୱାମୀ ପ୍ରାୟ ପ୍ରତିମାସରେ ଗସ୍ତରେ ଯାଆନ୍ତି। ତେଣୁ ମିନି ପିଲାମାନଙ୍କୁ ଧରି ଏକୁଟିଆ ରହିଥାଏ। ଦି'ଜଣ ପିଅନ ଆମ୍ବଗଛମୂଳେ ଶୁଅନ୍ତି। ମିନି ଘରେ କବାଟ ଦେଇଦିଏ। ପଞ୍ଜାବୀ ସ୍ତ୍ରୀଲୋକ ଜଣକ କହନ୍ତି, ଉପର ଘରପଟେ ରହନ୍ତୁ। ପିଲାସବୁ ଦଶ ବାର ବର୍ଷର, ଆସନ୍ତି। କହନ୍ତି, ଏ ଘରେ ଭୂତ ଅଛି। ମିନି ଦିନେ ଏମିତି ଡରିଯାଇ ଡ଼ାକ୍ତରଖାନାରେ ଛ'ସାତ ଦିନ ଥିଲା।

ମିନିର ବଡ଼ଦିଅରଙ୍କ ବାହାଘର ହେବ, ସେମାନେ ଆଉ ଯାଇପାରୁ ନାହାନ୍ତି। ଛୁଟି ନେଇ ବାହାଘର ସରିବା ପରେ ଦି'ମାସ ହବ, ଗାଁକୁ ଯିବାକୁ ବାହାରିଲେ। ଖରାଦିନ। ଗାଡ଼ିରେ ବହୁତ ଗରମ ହେଉଥାଏ। ବଡ଼ ବାକ୍ସପରି ଗୋଟେ ବରଫମୁଣ୍ଡା ଅଣେଇ ଡ଼ବାରେ ରଖିଲେ। ଥଣ୍ଡା ହେଲା। ଦି'ଦିନ, ଦି'ରାତିରୁ ବେଶି ଗାଡ଼ିରେ କଟେଇ କଟକରେ ପହଞ୍ଚିଲେ। ମନିବାବୁ ବୋଲି ଜଣେ ସାଙ୍ଗଙ୍କ ଘରେ ରହିଲେ। ମିନିର ଜଣେ ଦିଅର ଆସିଲେ, ମିନି ତାଙ୍କୁ ଚିହ୍ନି ପାରିଲା ନାହିଁ। ମିନି ଦିଲ୍ଲୀ ଗଲାବେଳକୁ ସେ ଦିଅର ଘରେ ନଥିଲେ, ଭଦ୍ରଖରେ ରହି ପଢୁଥିଲେ। ଯା'ଭିତରେ ତିନିବର୍ଷରୁ ବେଶି ଗଲାଣି। ସେ ପିଲାଦିନେ ଚେକିଚାକି ଥିଲେ, ଏବେ ଡ଼େଙ୍ଗା ହେଇଯାଇଥାଆନ୍ତି, କଳା ପତଳା ହେଇଥାନ୍ତି। ମନିବାବୁଙ୍କ ସ୍ତ୍ରୀ କହିଲେ, ତମ ଦିଅର ପରା ତାଙ୍କୁ କ'ଣ ଚିହ୍ନି ପାରୁନ! କେତେ ସମୟ ପରେ ମିନି ତାଙ୍କୁ ନିରେଖି ଦେଖିଲା। ଲାଜ ଲାଜ ହେଇ। ପୁଅକୁ ଡ଼ାକିଲେ ମଧ ସେ ତାଙ୍କ ପାଖକୁ ଯାଉ ନଥାଏ। ଦିଅର କହିଲେ, ମୁନା ଭାଇଙ୍କର ଶଳା ତାଙ୍କ ଘରକୁ

ଯିବାକୁ କହିଛନ୍ତି। ତାଙ୍କ ସହିତ ମୁନ୍ନା ଶଳା ଘରକୁ ଗଲେ। ସେ ଭାଉଜ ଆଉ ଛାଡ଼ିବାକୁ ରାଜି ହଉନଥାନ୍ତି। ମନିଭାଇଙ୍କ ଦି'ଝିଅ ମଧ୍ୟ ସାଙ୍ଗରେ ଯାଇଥାନ୍ତି। ସେମାନେ ଶୀଘ୍ର ଫେରିବା ପାଇଁ କହୁଥାନ୍ତି। ମୁନ୍ନାଙ୍କର ଶାଶୁ ଥାନ୍ତି। ସେ ଜଣେ ଡ଼ାଇବେଟିସ୍ ରୋଗୀ। ସେ ବହୁତ କଥା ପଚାରୁଥାନ୍ତି, ବାପା ତୋର ଅଛନ୍ତି ନା? ବୋଉ କିମିତି ଅଛନ୍ତି? ଏକାବେଳେ ଅଜଣା ଲୋକ ହେଲେ ମଧ୍ୟ ମାଆ ଭଳି ସ୍ନେହ କରୁଥାନ୍ତି। କହିଲେ, ହଁ'ମ, ରାତିରେ ନିଶ୍ଚେ ଖାଇକରି ଯିବ। ସେ ଭାଉଜତ ଜିଦ୍ କରୁଥାନ୍ତି, ଖାଇବାକୁ ହବ। କେତେବେଳେ ରୋଷେଇ ହେଲା, ସମସ୍ତେ ଖାଇଲେ ଅଳ୍ପ କିଛି। ଇଆଡ଼େ କୁମ ଅପା ରୋଷେଇ କରି ବସିଛନ୍ତି। ମିନି ପ୍ରଭୃତି ଫେରିଲା ବେଳକୁ ଅଧରାତି। କୁମଅପା କହିଲେ, ତୁମେ କିମିତି ଏତେ ରାତିଯାଏଁ ରହିଲ, ମୁଁ ରୋଷେଇ କରି ବସିଛି। ମିନିସ୍ୱାମୀ ବଡ଼ ବିନୟ ହୋଇ କହିଲେ, ଆମେ କ'ଣ କରିବୁ ଭାଉଜ, ସେ, ଏମିତି ଧଇଲେ ଯେ, ଆଉ ଛାଡୁନାହାନ୍ତି। ଦି'ଝିଅ ଯାକ କହିଲେ, ଆମେ ଯେତେ କହିଲୁ, ସେତ ଛାଡ଼ିଲେ ନାହିଁ। ଆମେ କିଏ କିଛି ଖାଇଲୁ ନାହିଁ। ସେ ରାତିକ ତାଙ୍କଘରେ ଶୋଇ, ସକାଳୁ ରେଳଗାଡ଼ି ଧଇଲେ। କଟକରୁ ଗାଁ ଷ୍ଟେସନ୍ ଅଳ୍ପବାଟ। ଗାଁରୁ ବଳଦଗାଡ଼ି ଆସିଥାଏ। ପିଲାଙ୍କୁ ଧରି ମିନି ଶଗଡ଼ରେ ଶୋଇପଡ଼ିଲା, ବଡ଼ କ୍ଳାନ୍ତ ହୋଇଥାଏ।

ମିନିସ୍ୱାମୀ ପାଖ ହେଲାରୁ ଚାଲିଥାନ୍ତି। ପାଛୋଟି ନେବାକୁ ସାନ ଦିଅର ଆସିଥାନ୍ତି। ସକାଳେ ଗାଁରେ ପହଞ୍ଚିଲେ। ଗାଁରେ ନୂଆ ବିଭା ହେଇ ଆସିଥିବା ମିନିର ତଳ ଯାଆଟି ଥାଏ। ତା'ତଳ ଯାଆଟି ଆଗରୁ ବାହା ହେଇଥାଏ। ତା'ର ଗୋଟିଏ ଝିଅ ବରଷକର ପାଖାପାଖି ହେଇଥାଏ, ଆଉ ଗୋଟିଏ ଝିଅ ମିନି ପହଞ୍ଚିବାର ଦିନକ ପରେ ହେଲା। ମିନି ଏତେ ଦୁର୍ବଳ ହେଇଥାଏ ଯେ, ଯୋଉଠି ହେଲେ ଶୋଇପଡ଼ିବାକୁ ଇଚ୍ଛା ହୁଏ। କିନ୍ତୁ କାମ ନକଲେ କିମିତି ହବ। ତାରତ ଗୋଟିଏ ଯାଆ, ଦି'ମାସର ବୋହୂ। ଆଉ ଗୋଟିଏ ଯାଆରତ ଛୁଆ ହେଇଛି। ମିନି ଆଉ ତା'ନଣନ୍ଦ ଦିହେଁ ମିଶି କାମ କରନ୍ତି।

କିଛି ଦିନ ଗାଁରେ ରହିଲାପରେ ମିନି ମନ ଖାଲି ବୋଉବାପାଙ୍କ ପାଖକୁ ଧାଉଁଥାଏ, କିମିତି କେବେ ଯିବ, ଦି'ମାସ ଛୁଟିରେତ ଗାଁକୁ ଆସିଛନ୍ତି। ମାସେ ଗଲା। ତା'ପରମାସରେ ବାପା ବୋଉଙ୍କୁ ଦେଖିବାକୁ ଗଲେ, ପିଲାମାନଙ୍କୁ ଧରି ମିନି ପରିବାର। ଏଥର ଗାଡ଼ିଯାତ୍ରା ବଡ଼ ଆଶ୍ୱସ୍ତି ଲାଗୁଥାଏ। ବାପା, ବୋଉଙ୍କ ପାଖରେ ପହଞ୍ଚିଲେ। ପାଖ ପଡ଼ିଶା ଦୁଇଘର ଛାଡ଼ି, ଭଉଣୀ, ତା'ପରିବାର ଘେନି ଥାଏ। ଚାରି ପାଞ୍ଚ ଦିନ ରହିଲେ। ବାପା, ବୋଉ, ଭଉଣୀ, ଭାଇଠାରୁ ବିଦାୟ ନେଇ ଶାଶୁ ଘରକୁ ଫେରିଲେ ରେଳଗାଡ଼ିରେ।

ଗାଁ ଷ୍ଟେସନ୍‌ରେ ଓହ୍ଲାଇଲେ। ପିଲାମାନଙ୍କୁ ଧରି ସାତମାଇଲ ବାଟ ଚାଲି ଚାଲି ଗଲେ, ଗାଁରୁ ଶଗଡ଼ ଆସି ନଥିଲା, ରିକ୍ସା ମିଳିବାର କଷ୍ଟ। ଚାଲିବାରେ ବଡ଼ କଷ୍ଟ ହେଉଥାଏ। ନଣନ୍ଦ ଭାଉଜ ଚାଲୁଥାନ୍ତି। ପିଲାମାନେ ଚାଲୁଥାନ୍ତି। ଗାଁରେ ପହଞ୍ଚିଲେ। ଗାଁରେ ଆଉ କିଛି ଦିନ୍ ରହି ବାହାରିଲେ ଦେରାଦୁନ୍।

ଦେରାଦୁନ୍‌ରେ ପହଞ୍ଚିଲା ବେଳକୁ, ମିନିସ୍ୱାମୀଙ୍କ ଉପର ଅଫିସରଙ୍କ ସ୍ତ୍ରୀ ପାଖପଡ଼ିଶା ଥାନ୍ତି। ସେ ସାନ ଭଉଣୀ ପରି ଦେଖନ୍ତି ମିନିକୁ। ମିନିର ଆଉ ଗୋଟିଏ ସନ୍ତାନ ହେବାର ଜଣାପଡୁଥାଏ। ମିନି ତାଙ୍କୁ ଦିଦି ଡ଼ାକେ। ତାଙ୍କର ଗୋଟିଏ ଝିଅ, ବଡ଼ ଗେଲଅସର ହୋଇଥାଏ। ତା'ନାଁ ମାଳା। କେତେ ଗପ କହି ତାକୁ ଭାତ ଖୁଆନ୍ତି। ଅମିକୁ ଡ଼କାଇ ନିଅନ୍ତି। ଆ, ଅମି, ମାଳା ସାଙ୍ଗରେ ଭାତ ଖାଇବୁ। ମାଳାର ବହୁତଗୁଡ଼ିଏ ଖେଳନା ଥାଏ। ରେଳଗାଡ଼ି, ବସ୍, ଛୋଟ ଟେବୁଲ୍ ଚେୟାର୍, ବିଭିନ୍ନ ପ୍ରକାର କଣ୍ଢେଇରେ ଗୋଟେ ଘର ପୂର୍ଣ୍ଣ ହୋଇଯାଇଥାଏ। ଅମିକୁ ଡ଼ାକି ନିଏ। ଖେଳେ। ତା'ପରେ ତାକୁ ମାରେ। ଅମି ଆଉ ଯିବାକୁ ରାଜି ହୁଏ ନାହିଁ।

ଟିକୁନିକୁ ଛ'ବର୍ଷ ପୂରିଲା। ତା'ର ଜନ୍ମଦିନ ହେଲା। ତା'ର ସାଙ୍ଗମାନେ ଆସିଲେ। ମାଳାର ମାମି, ମିନି ମିଶି ସବୁ ରୋଷେଇ କଲେ। କାଳୁରାମ ସ୍ତ୍ରୀ ମଧ୍ୟ କେତେ ସାହାଯ୍ୟ କଲା। ଏମିତି ଟିକୁନିକୁ ସାତ ବର୍ଷ ଚାଲୁଥାଏ, ଶୁଣାଗଲା ଯେ କଲିକତା ବଦଳି ହେଇଛି। ଦିଦି କହିଲେ, ଡ଼ିଜି ଯୁଆଡ଼େ ବଦଳି କରୁଛି ସିଆଡ଼େ ଯିବା, ବଦଳିପାଇଁ ମନା କରିବା ନାହିଁ। ମିନି ବଡ଼ ବ୍ୟସ୍ତ ହେଲା ମନେମନେ। ଆଗରୁ ବଦଳି କଥା ଜଣାପଡ଼ିଥିଲେ ସେମାନେ ଗାଁକୁ ଯାଇ ନଥାନ୍ତେ। ଏତେ ଗୁଡ଼ାଏ ଖର୍ଚ୍ଚ କରି ଗାଁକୁ ଯାଇ, ଆସିଲାପରେ ଜାଣିଲେ ଯେ କଲିକତା ବଦଳି ହୋଇଛି! ମିନି ଶାଶୂ, ଶ୍ୱଶୁର ଦେରାଦୁନ୍ ଆସିବାର ଥାଏ। ସେ ଦିହେଁ, ସାନ ନଣନ୍ଦଟି ମଧ୍ୟ ଆସିଲେ। ସେମାନେ ଦେରାଦୁନ୍‌ରେ ଚାରିମାସ ରହିଲେ। ଦ୍ୱିତୀୟ ପୁଅଟିକୁ କାଛୁକୁଣ୍ଡିଆ ଗାଁକୁ ଯାଇଥିବା ବେଳେ ଡ଼େଇଁଗଲା। ଗାଁରୁ ଫେରିବା କିଛି ଦିନରେ ସେଗୁଡ଼ିକ ବିଇଁଚିରେ ପରିଣତ ହେଇଯାଇଥିଲା। ଶୀତ ଦିନକୁ ଦେରାଦୁନ୍‌ରେ ଶାଶୁଙ୍କ ଦେହ ବହୁତ ଖରାପ ହେଇଗଲା। ମିନି ଶ୍ୱଶୁର ସାନ ନଣନ୍ଦ ରୁମ୍ ହିଟରଟିଏ ଲଗାଇ ବସି ରହୁଥାନ୍ତି। ସେତେବେଳକୁ ଭାଗଚାନ୍ଦ ତା ଗାଁକୁ ଛୁଟି ନେଇ ଯାଇଥାଏ, ହିମାଚଳର କୁଲୁକୁ। ମିନି ପିଲା ତିନୋଟିକୁ ଧରି ଶାଶୂ, ଶ୍ୱଶୁର ପିଲାଙ୍କର ଖାଇବା ତିଆରି କରେ। ଶାଶୁଙ୍କ ଦେହ ଭଲ ଥିଲେ, ଦିଲ୍ଲୀ ଯାଇଥାନ୍ତେ। ଦିଦି ପୁଣି କଲିକତା ଯାଇଥାନ୍ତି, ତାଙ୍କ ସ୍ୱାମୀ ବାନାର୍ଜୀ ଏକା ଥାନ୍ତି। ଦିନେ କହିଲେ, ଦାସ ସାହେବ ତ ବଦଳି ହେଇଯିବେ, ତାଙ୍କ ବାପା, ମା'ଙ୍କୁ ନେଇ ବୁଲିଯିବା ହରଦ୍ୱାର, ଋଷିକେଶ। ତାଙ୍କ କାର୍‌ରେ



ମିନି ପରିବାରକୁ ଶାଶୁ, ଶ୍ୱଶୁର ଓ ନଣନ୍ଦଙ୍କୁ ନିଜେ କାର୍ ଚଳାଇ ବୁଲାଇ ନେଲେ। ମିନିନଣନ୍ଦ ଭଲ ଗୀତ ଗାଆନ୍ତି, ସେ କାର୍‌ରେ ଗୀତ ଗାଉଥିଲେ। ମିନି ହରଦ୍ୱାରରେ ଗାଧୋଇଲା ବେଳେ ତା'ଗୋଡ଼ଟା ଶିଉଳିରେ ଖସିଗଲା। ଭାସି ଯାଇଥାନ୍ତା, ତା ସ୍ୱାମୀ ହାତ ଧରି ଭିଡ଼ି ଆଣିଲେ। ବାନାର୍ଜୀ ଗାଧୋଉଥିଲେ, ଆଶ୍ଚର୍ଯ୍ୟ ହୋଇ ଅନାଇଁ ରହିଲେ। ମିନିସ୍ୱାମୀ ପିଲାମାନଙ୍କୁ ତାଙ୍କ ବାପା, ବୋଉ ଭଉଣୀଙ୍କୁ ପାଣି ଆଣି ଛିଞ୍ଚି ଦଉଥାନ୍ତି। ହରଦ୍ୱାର, ଋଷିକେଶ ବୁଲି ଦେରାଦୁନ୍ ଫେରିଲେ।

କଲିକତା ତ ବଦଳି ହୋଇଛି। ମିନି ତା ଶାଶୁ ଶ୍ୱଶୁର ପିଲାମାନେତ ଗାଁକୁ ଯିବେ। ମିନିସ୍ୱାମୀ ସେମାନଙ୍କୁ ଗାଁରେ ଛାଡିଦେଇ କଲିକତା ଫେରି ସେଠି ଜଏନ କରିବେ। ମିନି ଧୀରେଧୀରେ ଜିନିଷପତ୍ର ସଜାଡୁ ଥାଏ। ମିନି ଶ୍ୱଶୁର ଜିନିଷ ପତ୍ର ସଜାଡୁଥାନ୍ତି। ଭାଗଚାନ୍ଦ୍ ଫେରି ଆସିଲା ତା ଗାଁରୁ। କହିଲା, ବିବିଜୀ, ଆପ ଔର ସାହେବ ମୁଝେ ସପ୍ନାମେ ଆୟେ। ମୈନେ ଆଗୟା। ଦୁଇଟି ହାତବୁଣା ମୋଟ ପଶମିନା ସାଲ୍ ଆଣିଥାଏ, ଆଗରୁ ଟଙ୍କାନେଇଥିଲା।

ବାନାର୍ଜୀ ସାହେବ ଏକା ଥିବାହେତୁ, ମିନିସ୍ୱାମୀଙ୍କ ଠାରୁ ଯେ ଦାୟିତ୍ୱ ନେବେ, ସେଇ ଖରେ ସାହେବ ତାଙ୍କ ପରିବାର ବାନାର୍ଜୀ ଘର କୁଣିଆ ହୋଇ ରହିଥାନ୍ତି, ମିନି ପରିବାର ଏ ଘର ଛାଡି ନଥାନ୍ତି। ଜିନିଷ ପତ୍ର

ବନ୍ଧା ସରିଥାଏ । ବାନାର୍ଜୀଙ୍କ ଘରେ ମିନି ପରିବାର ଖାଇ କରି, ରେଳ ଧରିଲେ । ଗାଁ ଷ୍ଟେସନ ଆଗରୁ ଆଉ ଗୋଟେ ଷ୍ଟେସନରେ ଓହ୍ଲେଇ ଧନେଶ୍ୱର ବୋଲି ଗୋଟିଏ ଗାଁକୁ ଗଲେ । ସେ ଗାଁରେ ମିନିର ଦ୍ୱିତୀୟ ଦିଅରଙ୍କ ଶଶୁରଘର । ମିନି ଶାଶୂ କହିଲେ, ସେଠି ଏ ରାତିକ ରହିବା, କାଲିକ ରହିବା, ତା ପରଦିନ ଗାଁକୁ ଯିବା । ସେଠି ଦିଦିନ ରହିବା । ଗାଁରେ ମିନିସ୍ୱାମୀ ଦି ଚାରିଦିନ ରହି ଫେରିଲେ କଲିକତା ।

— ୨୦ —

ମିନି ରହିଲା ଶାଶୂ ଶ୍ୱଶୁରଙ୍କ ପାଖରେ । ଘରେ ମିନିର ପିଲାଏ, ସାଆ ଦିଅର ଓ ସେମାନଙ୍କର ଦିଇଟି ଝିଅ । ମିନିବର କଲିକତାରେ ବର୍ଷେ ରହିଲେ । ମିନି ତା ବାପାଙ୍କୁ ଦେଖିବାକୁ ଆଉ ସୁଯୋଗ ପାଇଲାନି, ସେ ଚାଲିଗଲେ ଇହଧାମ ଛାଡି । ତାର ଛୋଟ ପୁଅଟିକୁ ବର୍ଷେ ହେଲା । ବାପାଙ୍କର ଶ୍ରାଦ୍ଧବାର୍ଷିକକୁ ମିନି ପିଲାମାନଙ୍କୁ ଧରି ଗଲା ।

ଟିକୁନି ଦେରାଦୁନ୍‌ରୁ ଆସି ପୁଣି ଗାଁର ଓଡ଼ିଆ ସ୍କୁଲ୍‌ରେ ପଢ଼ିଲା ଅମି ପଢ଼ିନାହିଁ । ମିନିର ସ୍ୱାମୀ କଲିକତାରୁ ଆସି ପହଞ୍ଚିଲେ, ସେମାନଙ୍କୁ ନେବାପାଇଁ । ସେତେବେଳେ ସେ ଶାନ୍ତିନିକେତନ ପାଖରେ ତମ୍ବୁରେ ରହୁଥାନ୍ତି । ମିନି ତା'ସାନ ଦୁଇ ପୁଅଙ୍କୁ ନେଇ, କଲିକତା ହେଇ ଶାନ୍ତି ନିକେତନରେ ପହଞ୍ଚିଲା । ସେଠି ଜଣେ ବନ୍ଧୁଙ୍କ ଘରେ ଚାରି ପାଞ୍ଚ ଦିନ ରହି, ମିନି ସ୍ୱାମୀଙ୍କର ସେ ତମ୍ବୁକୁ ଗଲା । ତମ୍ବୁ ରହଣି ଚାରିମାସ ହେଲା । ପାଖରେ ନଈ । ଆଦିବାସୀ ଲୋକମାନେ କାମ କରୁଥାନ୍ତି । ମାସେ ରହିଲାପରେ ସବା ସାନ ଦିଅର ଆସିଲେ । ପିଲାମାନଙ୍କୁ ସାଙ୍ଗ ହେଲେ । ମିନିସ୍ୱାମୀ ଫିଲ୍‌ଡ଼୍‌କୁ ଯା'ନ୍ତି ସକାଳ ଛ'ରେ ଆସନ୍ତି ଦିନ ଗୋଟାକ ବେଳେ । ଯୋଉ ବନ୍ଧୁଙ୍କ ଘରେ ଶାନ୍ତିନିକେତନରେ ଥିଲେ, ସେ ପୁଣେ ଚାଲିଗଲେ । ମିନିସ୍ୱାମୀ ଅଫିସ୍ ଜିପ୍‌ରେ ଷ୍ଟେସନ୍‌ରେ ଛାଡ଼ି ଆସିଲେ ।

ନଈକୂଳରେ ଗୋଟେ ଉଚ୍ଚ ପଡ଼ିଆରେ ଗୁଡ଼ିଏ ତମ୍ବୁ । ମିନି ଘର ତମ୍ବୁପାଖକୁ ମୁଖାର୍ଜୀ ବୋଲି ଜଣେ ଥାଆନ୍ତି । ତାଙ୍କର ଛୋଟିଆ ତମ୍ବୁଟିଏ । ଡ୍ରାଇଭର ସେମିତି ଅଲଗା ତମ୍ବୁରେ ରହୁଥାନ୍ତି । ମାତ୍ର ରୋଷେଇ ଏକାଠି ହୁଏ । ମୁଖାର୍ଜୀ ଆଉ ଜଗବନ୍ଧୁ ନିଜ ନିଜର ରନ୍ଧାବଢ଼ା କରନ୍ତି । ମୁଖାର୍ଜୀଙ୍କୁ ଚମତ୍କାର ରାନ୍ଧିଆସେ । ମାଛମୁଣ୍ଡ ଡ଼ାଲିରେ ପକାଇ ଘାଣ୍ଟ କରନ୍ତି । ମୁଡ଼ୋଘଣ୍ଟ କହନ୍ତି । ଓଡ଼ିଆଏ ଏ ଖାନା ବଙ୍ଗାଳୀଙ୍କଠଉଁ ଶିଖି ମୁଡ଼ୋକୁ ମୁଢ଼ି କରି, ମୁଢ଼ିଘାଣ୍ଟ କହୁଛନ୍ତି । ମୁଖାର୍ଜୀ ଦିନେଦିନେ ମୁଡ଼ୋଘଣ୍ଟ ନହେଲେ ମାଛ ତରକାରି ପଠାନ୍ତି ।



ତମ୍ଲୁରେ ଛ'ମାସ ରହଣି ପରେ ମିନିଘର କଲିକତା ଗଲେ। ସେଠି ବେହେଲାରେ ନୂଆ ସରକାରୀ ଘର ମିଳିଥାଏ। ଘରଗୁଡ଼ିକ ଦୋମହଲା। ତଳମହଲାରେ ଗୋଟେ ବସା, ଉପର ମହଲାରେ ଆଉ ଜଣଙ୍କ ବସା। ମିନିଘର ତଳମହଲାରେ ରହିଲେ। ଉପରମହଲାରେ ବଙ୍ଗାଳୀ ସ୍ୱାମୀ ସ୍ତ୍ରୀ ଦି'ଜଣ ଥାଆନ୍ତି। ସାମ୍ନାରେ ଉପରମହଲାରେ ଆଉ ଗୋଟିଏ ବଙ୍ଗାଳୀ ପରିବାର ଦି'ଜଣ ଥାଆନ୍ତି। ସେମାନେ ମିନି ପୁଅଝିଅଙ୍କ ସହିତ ଭାବଦୋସ୍ତି କଲେ। କଥାବାର୍ତ୍ତା ସବୁତ ବଙ୍ଗଳା। ମିନିଘର ଏକା ଗୋଟିଏ ଓଡ଼ିଆ ଘର। ମିନିର ଆଉ ଜଣେ ଦିଅର କିଛିଦିନପରେ ପହଞ୍ଚିଲେ। ସେ ପିଲାମାନଙ୍କୁ ଜଗନ୍ତି। ବଜାରଘାଟ କରି ଆଣନ୍ତି। ମିନିସ୍ୱାମୀ ଖାଇସାରି ଦିନ ନଅଟାରୁ ଚାଲି ଚାଲି ଟ୍ରାମ୍ ଧରନ୍ତି। ଅଫିସ୍ ଯାଆନ୍ତି। ଫେରନ୍ତି ରାତି ଦଶଟାକୁ। ଦିଅର ଦି'ଜଣ କେତେ ଦିନ ରହିଲେ। ଥରେ ଟୁର୍‌ରେ ଯାଇ ଟିକୁନିକୁ ତା'ବାପା ସାଙ୍ଗରେ ଆଣିଲେ। ଅଳ୍ପ କିଛି ଦିନ ରହି ସେ ଆଉ ସାନ ଦିଅର ଗାଁକୁ ଗଲେ। ମିନି ତା'ସ୍ୱାମୀ, ପୁଅଝିଅ ପୁଅକୁ ଛାଡ଼ିବାକୁ ଗଲେ ଟାକ୍ସି କରି। ଟ୍ରେନ୍‌ରେ ଟିକୁନି ସାନ ଦିଅର ବସିଲେ। ମିନିର ମନ କ'ଣ ହୋଇଯାଉଥାଏ। ଟିକୁନିର ଆଖି ଛଳଛଳ ହେଉଥାଏ, ଭାଇଭଉଣୀ ବାପା, ବୋଉଙ୍କୁ ଛାଡ଼ି ସେ ଏକୁଟିଆ ଗାଁକୁ ଯାଉଛି ଦାଦାଙ୍କ ସହିତ। ଏମାନେ ବସାକୁ ଫେରିଲେ। କଲିକତା ରହିବା ବଡ଼ କଷ୍ଟକର ହେଲାଣି। ସାଇପଡ଼ିଶା ବଙ୍ଗାଳୀ ଦରବୁଢ଼ା ଲୋକ ଗୁଡ଼ିକ ସରକାରୀ ଘରପାଇ ଆସିଛନ୍ତି। ସେମାନେ ମିନିସ୍ୱାମୀଙ୍କୁ ଦେଖି କହନ୍ତି, ଏତେ କମ୍ ବୟସର ଲୋକଟିଏ କ'ଣ ସରକାରୀ

ଘର ପାଇ ଆସିଛନ୍ତି ! ଜାଣିଲେ ଯେ, ଲୋକଟି ଭାରତ ସରକାରଙ୍କ କ୍ଲାସ ୱାନ୍ ଲୋକଟିଏ ।

ସେବର୍ଷ ଦୁର୍ଗାପୂଜା ଦୀପାବଳୀକୁ ମିନି ସାଇପଡ଼ିଶାର ସ୍ତ୍ରୀଲୋକମାନଙ୍କ ସାଙ୍ଗରେ ଦି'ତିନିଟି ଦୁର୍ଗା ମୂର୍ତ୍ତି ଦେଖିବାକୁ ଯାଇଥିଲା । ମିନିସ୍ୱାମୀଙ୍କର ଜଣେ ବନ୍ଧୁ ଯାଇ କଲିକତା ବସାଘରେ ପହଞ୍ଚିଲେ । ସେ କହିଲେ, ତୋର ଏଠାରେ ରହିବା ବଡ଼ କଷ୍ଟକର ହେଉଛି । ପ୍ରତିଦିନ ଏତେ ବାଟ ଚଲା ଓ ପୁଣି ଟ୍ରାମ୍‌ରେ ଗୁଡ଼େ ବାଟ ଯିବା, ପିଲାମାନେ ବେହେଲାରେ, ତୋ ଅଫିସ୍ ଏତେ ଦୂର ! ତୋ ଭାଇ କେତେଦିନ ଜଗି ରହିବ କି ? ଆସି ସାତ ଆଠ ମାସ ରହିଲାଣି । ତୁ ଓଡ଼ିଶା ଚାଲେ । ସେଠି ତୋର ପଦୋନ୍ନତି ହବାର ଅଛି । ମିନି ମଧ୍ୟ ରହିବାକୁ ଇଚ୍ଛା କଲା ନାହିଁ । ସେଠୁଁ କଲିକତା ଛାଡ଼ିବାର ମନସ୍ଥ କଲେ । ମିନି ପ୍ରଭୃତି କଲିକତାରେ ଥିବାବେଳେ ନେହେରୁଙ୍କ ମୃତ୍ୟୁ ଖବର ଚାରିଆଡ଼େ ପ୍ରଚାରିତ ହେଲା । ସାରା ସହରରେ ଦୁଃଖର ଛାଇ ଘୋଟିଗଲା ।

ମିନି ପରିବାର କଲିକତା ଛାଡ଼ିବା ପୂର୍ବରୁ ତାଙ୍କ ବାରିପଟ ସାମ୍ନା ଘରକୁ ଜଣେ ବଙ୍ଗାଳୀ ପରିବାର ଆସିଲେ । ତାଙ୍କର ଦୁଇଟି ପୁଅ । ସେମାନେ ଦିଲ୍ଲୀରୁ ଆସିଥାନ୍ତି । ଅନ୍ୟ ବଙ୍ଗାଳୀଙ୍କ ସହିତ ଏତେ ମିଶୁ ନଥାନ୍ତି । ପଡ଼ିଶା ଘରତ, ମିନି ସହିତ କଥାବାର୍ତ୍ତା ହିନ୍ଦୀରେ କହନ୍ତି, ବେଳେବେଳେ ବଙ୍ଗଳାରେ । ତାଙ୍କ ସାନପୁଅଟି ମିନି ଘରକୁ ଆସେ । ସେ କହିଲେ, ଦିଦି ତମେ ଆଉ ରୋଷେଇ କରନାହିଁ । ଜିନିଷ ପତ୍ର ବାନ୍ଧିଦିଅ । ସବୁ ସଜାଡ଼ି ରଖିଦିଅ । ଗୋଟିଏ ଟିଫିନ୍ କ୍ୟାରିଅର୍ ବାହାରେ ରଖିଦିଅ । ମୁଁ ପିଲାଙ୍କ ପାଇଁ ଖାଇବା ଦେଇଦେବି । ସମସ୍ତେ ତାଙ୍କ ଘରେ ଖାଇଲେ । ଆହୁରି ବାଟକୁ ପିଲାମାନଙ୍କ ପାଇଁ ଦେଲେ । ଟାକ୍ସି ଆସିଲା । ସେଥିରେ ମିନି ପରିବାର ସମସ୍ତେ ବସିଲେ, ସାଇ ପଡ଼ିଶାଠୁଁ ବିଦାୟ ନେଇ । ପାଖଘର ଦିଦି ବେଶ୍ ମନେ ପଡୁଥାନ୍ତି । କେଇଟା ଦିନରେ ଖୁବ୍ ଆପଣାର ହେଇଥିଲେ । ହାଓଡ଼ାରେ ଗାଡ଼ିରେ ବସିଲେ । ଏଥର ଆଉ ବାହାରେ ବାହାରେ ନୁହଁ । ଗାଁ । ଓଡ଼ିଶା ।